# ORIYĀ GRAMMAR.

## PART. I.



ଓଡ଼ିଆ ବ୍ୟାକରଣ ସାର ।

ଦ୍ୱିଭାଷାରେ

ଶ୍ରୀଯୁତ ଲେସି ସାହେବଙ୍କ ଦ୍ୱାରା ରଚିତ ହେଲା ।

ପ୍ରଥମ ଭାଗ ।

---

SECOND EDITION.

---

CUTTACK:

PRINTED AT THE ORISSA MISSION PRESS.

W. BROOKS, PRINTER.

1857.

# ORIYA GRAMMAR.

PART. I.



ଓଡ଼ିଆ ବ୍ୟାକରଣ ସାର ।

ଉଭାଷାରେ

ଶ୍ରୀଯୁତ ଲେସି ସାହେବଙ୍କ ଦ୍ୱାରା ରଚିତ ହେଲା ।

ପ୍ରଥମ ଭାଗ ।

---

SECOND EDITION.

---

CUTTACK:

PRINTED AT THE ORISSA MISSION PRESS,
W. BROOKS, PRINTER.

1857.

# ବିଜ୍ଞାପନପତ୍ର ।

ଏ କ୍ଷୁଦ୍ର ଭାଷା ବ୍ୟାକରଣ ସାର ଏତଦ୍ଦେଶୀୟ ପାଠଶାଳା ଅଧ୍ୟାୟୀ ବାଳକଙ୍କ ଶିକ୍ଷା ନିମନ୍ତେ ରଚିତ ହୋଇଅଛି । ଏବଂ ଭରସା ଏହି କି ତାହା ଅଳ୍ପାୟାସରେ ବୋଧ ହୋଇ ପାରିବ କାରଣ କି ଭାଷା ଅତିଶୟ ସହଜ । ବ୍ୟାକରଣ ବିଧି ଜ୍ଞାତ ହେବାର ସମସ୍ତଙ୍କର ଅତ୍ୟାବଶ୍ୟକ ହେତୁ କି ଯଦ୍ୟପି ସ୍ୱୀୟ ଭାଷା ଶୁଦ୍ଧରୂପେ କହିବାକୁ ଆଉ ଲେଖିବାକୁ କାହାର ଆକାଂକ୍ଷା ଥାଏ, ବ୍ୟାକରଣ ନ ଜାଣିଲେ ତାହାର ସେହି ଇଚ୍ଛା କଦାପି ସଫଳ ହୋଇ ନ ପା-ରିବ । ଏବିଷୟର ପ୍ରମାଣ ବର୍ତ୍ତମାନକାଳରେ ସ୍ପଷ୍ଟରୂପେ ଦେଖା ଯାଏ । ପୁନର୍ବାର ଲୌକିକ ବିଷୟରେ ଲେଖାପଡ଼ି ବିଦ୍ୟାର ମୂଲ୍ୟ ପ୍ରତିଦିନ ଉନ୍ନତ ହେଉଅଛି ଏବଂ ଆସନ୍ନ କାଳରେ ଅଧିକ ହେବ ଅତଏବ ସେହି ବିଦ୍ୟା ଉଦ୍ଦେଶରେ ସହକାରିରୂପେ ଏ କ୍ଷୁଦ୍ର ବ୍ୟା-କରଣ ଆକାଂକ୍ଷିମାନଙ୍କଠାରେ ସମର୍ପଣ ହେଉଅଛି ।

ଅବଶେଷରେ ଏ ପୁସ୍ତକ ରଚନାରେ ଶ୍ରୀଯୁତ ରାଜା ରାମମୋ-ହନ ରାୟଙ୍କ ଆଉ ଶ୍ରୀଯୁତ ବାବୁ ବ୍ରଜକିଶୋର ଗୁପ୍ତଙ୍କ ବଙ୍ଗଭାଷା ବ୍ୟାକରଣ ପୁଣି ଶ୍ରୀଯୁତ ବାବୁ ବଣ୍ମୟର ବିଦ୍ୟାଭୂଷଣଙ୍କ ରଚିତ ଉତ୍କଳ ଭାଷା ବ୍ୟାକରଣରୁ ଯତ୍କିଞ୍ଚିତ ଉପକାର ପ୍ରାପ୍ତ ହୋଇଅଛି ତାହା ଏଠାରେ ସ୍ୱୀକାର କରିବାର କର୍ତ୍ତବ୍ୟ ।

W. C. LACEY.

# ନିର୍ଘଣ୍ଟ ।

# ଓଡ଼ିଆ ବ୍ୟାକରଣ ସାର ।

## ଅଭିଷ ।

ଯେଉଂ ବିଦ୍ୟା ଜାଣିଲେ ଭାଷା ଶୁଦ୍ଧ ଅଉ ଲେଖା ଶୁଦ୍ଧ ହୁଏ ସେ ବିଦ୍ୟାକୁ ବ୍ୟାକରଣ ବୋଲି ଯାଏ ।

ବ୍ୟାକରଣରେ ଜ୍ଞାନ ତିନି ପ୍ରକାର । ପ୍ରଥମ ବର୍ଣ୍ଣଜ୍ଞାନ, ଦ୍ୱିତୀୟ ପଦଜ୍ଞାନ, ତୃତୀୟ ବାକ୍ୟଜ୍ଞାନ ।

ଅ ଆ ଇ ଈ ପ୍ରଭୃତି ଏବଂ କ ଖ ଗ ଘ ଙ ଇତ୍ୟାଦି ଅକ୍ଷରକୁ ବର୍ଣ୍ଣ ବୋଲି ଯାଏ । ଏକ୨ ଅକ୍ଷରର ଉଚ୍ଚାରଣ ଅଉ ପ୍ରକାର ପୁଣି କିରୂପେ ଏକ ଅକ୍ଷର ଅନ୍ୟଅନ୍ୟ ଅକ୍ଷର ସଙ୍ଗେ ସଂଲଗ୍ନ ହେବାରୁ ପଦ ହୁଏ ଏ ବିଷୟମାନ ବ୍ୟାକରଣର ପ୍ରଥମ ଭାଗରୁ ଜାଣିବ ।

ନାନା ବର୍ଣ୍ଣ ମେଳନରେ ପଦ ହୁଏ । ଯଥା, ପୃଥିବୀ, ଅକାଶ, ମନୁଷ୍ୟ, ବୃକ୍ଷ ଏ ସବୁ ପଦ, ଅଥଚ ନାନା ପଦର ନାମ, ଜାତି, ଲିଙ୍ଗ, ରୂପ ଇତ୍ୟାଦି ଅପର୨ ବିଷୟର ପ୍ରସଙ୍ଗ ବ୍ୟାକରଣର ଦ୍ୱିତୀୟ ଭାଗରେ ମିଳେ ।

ସମାପିକା କ୍ରିୟାଯୁକ୍ତ ପଦ ସମୂହକୁ ବାକ୍ୟ ବୋଲି ଯାଏ । ଅର୍ଥାତ କେତେକ ପଦ ଏକଏ ହୋଇ ଅଭିପ୍ରେତ ଅର୍ଥକୁ ଏହିରୂପେ ବୁଝାଇଲେ କି ସେ ଅର୍ଥ ସମ୍ପୂର୍ଣ୍ଣ କରିବା ପାଇଁ ଅନ୍ୟ କୌଣସି ପଦର ଅପେକ୍ଷା କିମ୍ବା ପ୍ରୟୋଜନ ନ ଥାଏ, ସେ ପଦ ସମୂହକୁ ବାକ୍ୟ କହାଯାଏ । ଯଥା, କୁସଂସର୍ଗରେ ସଦାଚରଣ ନଷ୍ଟ ହୁଏ ।

ଏହି ପଦ ସମୂହରେ ଏକ ବାକ୍ୟ ହେଉଅଛି । ଅଥଚ ବ୍ୟାକରଣର ତୃତୀୟ ଭାଗରେ ଏହି ବାକ୍ୟ ବିନ୍ୟାସାଦିର ଜ୍ଞାନ ହୁଏ ।

---

## ପ୍ରଥମ ଭାଗରେ ବର୍ଣ୍ଣଜ୍ଞାନ ।

### ପ୍ରଥମ ପ୍ରକରଣ ।

### ଅଥ ବର୍ଣ୍ଣଭେଦ ।

ବର୍ଣ୍ଣମାଳାରେ ପଞ୍ଚାଶ ବର୍ଣ୍ଣ; ତନ୍ମଧ୍ୟରୁ ଷୋଡଶ ସ୍ୱରବର୍ଣ୍ଣ ଅବଶିଷ୍ଟ ଚୌତିଶ ହଲବର୍ଣ୍ଣ କିମ୍ବା ବ୍ୟଞ୍ଜନ* ।

### ପ୍ରଥମେ ସ୍ୱରବର୍ଣ୍ଣ ।

ଅ ଆ ଇ ଈ ଉ ଊ ଋ ୠ ଌ ୡ ଏ ଐ ଓ ଔ ଅଂ ଅଃ ।

### ଦ୍ୱିତୀୟରେ ହଲବର୍ଣ୍ଣ ।

କ ଖ ଗ ଘ ଙ । ଚ ଛ ଜ ଝ ଞ । ଟ ଠ ଡ ଢ ଣ । ତ ଥ ଦ ଧ ନ । ପ ଫ ବ ଭ ମ । ଯ ର ଲ ବ ଶ ଷ ସ ହ କ୍ଷ ।

ସ୍ୱରବର୍ଣ୍ଣ ହଲବର୍ଣ୍ଣର ଭେଦ ଏହି କି ହଲ ବ୍ୟତିରେକେ ସ୍ୱର ଉଚ୍ଚରିତ ହୋଇ ପାରେ ମାତ୍ର ସ୍ୱର ବ୍ୟତିରେକେ କୌଣସି ବ୍ୟଞ୍ଜନର ଉଚ୍ଚାରଣ ହୋଇ ନ ପାରେ । ଯଥା, ଅ ଇ ଏ୨ ସ୍ୱର ଉଚ୍ଚାରଣରେ ଅନ୍ୟ କୌଣସି ଅକ୍ଷରର ସାହାଯ୍ୟ ଅବଶ୍ୟକ ନୁହେ, ମାତ୍ର କ ଖ ଇତ୍ୟାଦି ଉଚ୍ଚାରଣ କଲେ ଶେଷରେ ଅକାର ଉଚ୍ଚରିତ ହୁଏ କିମ୍ବା ଅକାର ଲୋପ ହେଲେ ଆ ଇ ଇତ୍ୟାଦି ସ୍ୱରର ସଂଯୋଗ ଅବଶ୍ୟକ । ଅତଏବ ସ୍ୱରବର୍ଣ୍ଣର ଲକ୍ଷଣ ଏହି କି ସ୍ୱେ

---

* ଌ ୡ ଏ ଦୁହେଁ ଏକାବର୍ଣ୍ଣ କିନ୍ତୁ ସ୍ଥଳ ବିଶେଷରେ ଉଚ୍ଚାରଣ ଦ୍ୱାରା ଭିନ୍ନ ହୁଅନ୍ତି ।

ସ୍ୱୟଂ ଉଚ୍ଚରିତ ହୋଇ ପାରେ ଏବ ହଲବର୍ଣ୍ଣଙ୍କୁ ଉଚ୍ଚାରଣ ଯୋଗ୍ୟ କରେ । ବ୍ୟଞ୍ଜନର ଲକ୍ଷଣ ଏହି ଯେ ସ୍ୱର ସାହାଯ୍ୟ ବିନା ତାହାର ଉଚ୍ଚାରଣ ଅସାଧ୍ୟ ।

ଅକାର ଯାବନ୍ତ ବ୍ୟଞ୍ଜନ ଅକ୍ଷରର କ୍ରୋଡସ୍ଥ ହୋଇ ସେ ଅକ୍ଷର ସଙ୍ଗେ ଉଚ୍ଚରିତ ହୁଏ, ତାକୁ ଅଦୃଶ୍ୟ ଅକାର ବୋଲି ଯାଏ । ଯଥା, ବଳ ; ଯଦ୍ୟପି ଏହି ଶବ୍ଦରେ କେବଳ ଦୁଇ ଅକ୍ଷର ଲେଖା ଯାଏ ତଥାପି ବଅଳଅ ଏହି ଚାରି ଅକ୍ଷରର ଉଚ୍ଚାରଣ ହୁଏ ।

ଯଦ୍ୟପି ଋ ୠ ଌ ୡ ସ୍ୱର ମଧ୍ୟରେ ଗଣିତ ତଥାପି ଏଚାରି ଅକ୍ଷର ଶୁଦ୍ଧ ସ୍ୱର ନୁହନ୍ତି ; କାରଣ କି ରକାର ଏବ ଉକାର ସଂ-ଯୋଗ କଲେ ଋକାର ହୁଏ ଆଉ ଲକାର ଉକାର ସଂଯୋଗରୁ ଌକାର ହୁଏ ।

ଏ ଐ ଓ ଔ ଏ ଚତୁଷ୍ଟୟକୁ ମିଶ୍ରିତ ସ୍ୱର କହା ଯାଏ ଅର୍ଥାତ୍ ଦୁଇ୨ ସ୍ୱରଯୁକ୍ତ ହୋଇ ଏଚାରି ବର୍ଣ୍ଣ ହୁଅନ୍ତି ।

ଅଂ ଅଃ ଏଦୁହିଙ୍କୁ ଅନୁସ୍ୱାର ବିସର୍ଗ ବୋଲି ଯାଏ । ମାତ୍ର କେବଳ ସଂସ୍କୃତ ଶବ୍ଦରେ ସେ ଦୁଇ ସ୍ୱରର ପ୍ରୟୋଗ ହୁଏ, କୌ-ଣସି ଭାଷା ଶବ୍ଦରେ ପ୍ରୟୋଗ ନାହିଁ ।

ँ ଏହି ଚିହ୍ନକୁ ଚନ୍ଦ୍ରବିନ୍ଦୁ କହା ଯାଏ । ଯେଉଂ ଅକ୍ଷର ଉପରେ ଏ ଚିହ୍ନର ଯୋଗ ଥାଏ ତାହାର ଉଚ୍ଚାରଣ ସାନୁନାସିକ ହେବ, ଯଥା, ଯାଁଇ, କାହିଁ ଇତ୍ୟାଦି ।

୍ ଏହି ଚିହ୍ନ କୌଣସି ବ୍ୟଞ୍ଜନ ବର୍ଣ୍ଣ ତଳେ ଲେଖା ଗଲେ ଅକାର ଲୋପ ହୁଏ । ଯଥା, ବାକ୍ । ତତ୍ ।

ସ୍ୱର ମଧ୍ୟରୁ ଅ ଇ ଉ ଋ ଌ ଏପାଞ୍ଚ ହ୍ରସ୍ୱ ଏବ ଆ ଈ ଊ ୠ ୡ ଏପାଞ୍ଚ ଦୀର୍ଘ ସ୍ୱର ଜାଣିବ ।

| | |
|---|---|
| କ ଖ ଗ ଘ ଙ | -ଏପାଞ୍ଚ କବର୍ଗ |
| ଚ ଛ ଜ ଝ ଞ | ଏପାଞ୍ଚ ଚବର୍ଗ |
| ଟ ଠ ଡ ଢ ଣ | ଏପାଞ୍ଚ ଟବର୍ଗ |
| ତ ଥ ଦ ଧ ନ | ଏପାଞ୍ଚ ତବର୍ଗ |
| ପ ଫ ବ ଭ ମ | ଏପାଞ୍ଚ ପବର୍ଗ |

ଏହିରୂପେ କକାରଠାରୁ ମକାର ପର୍ଯ୍ୟନ୍ତେ ତାବତ୍ ଅକ୍ଷର ବର୍ଗୀୟ, ବାକୀ ସମସ୍ତ ବ୍ୟଞ୍ଜନ ଅର୍ଥାତ୍ ଯକାରଠାରୁ କ୍ଷକାର ପର୍ଯ୍ୟନ୍ତେ ଅବର୍ଗୀୟ ଅକ୍ଷର । ଏକ୨ ବର୍ଗର ପ୍ରଥମ ତୃତୀୟ ଅକ୍ଷର ଅଳ୍ପ-ପ୍ରାଣ ଆଉ ଦ୍ୱିତୀୟ ଚତୁର୍ଥ ଅକ୍ଷରକୁ ବହୁପ୍ରାଣ ବୋଲି ଯାଏ । ଯଥା କ ଗ ଚ ଜ ଟ ଡ ତ ଦ ପ ବ ଏ ଦଶ ଅକ୍ଷର ଅଳ୍ପପ୍ରାଣ କାରଣ କି, କ ଗ ଚ ଜ ଇତ୍ୟାଦିର ସହଜ ଅର୍ଥାତ୍ ଲଘୁ ଉଚ୍ଚା-ରଣ ହୁଏ ଏବଂ ଖ ଘ ଛ ଝ ଠ ଢ ଥ ଧ ଫ ଭ ଏହି ଦଶ ବର୍ଣ୍ଣ ବହୁପ୍ରାଣ ହେତୁ କି ଏମାନଙ୍କ ଉଚ୍ଚାରଣ କରିବାର୍ କଠିନ ଅନ୍ତରେ ହକାର ଉଚ୍ଚାରିତ ହେଲା ପ୍ରାୟ ବୋଧ ହୁଅଇ ।

ଙ ଞ ଣ ନ ମ ଏହି ପାଞ୍ଚକୁ ଅନୁନାସିକ କହନ୍ତି ଅର୍ଥାତ୍ ଏମା-ନଙ୍କ ଉଚ୍ଚାରଣ ନାସାରୁ ଜନ୍ମେ ।

ଏକ୨ ବର୍ଣାକ୍ଷର ଉଚ୍ଚାରଣ ମୁଖର ଭିନ୍ନ୨ ସ୍ଥାନରୁ ହୁଏ ଯଥା, କବର୍ଗ ଆଉ ସ୍ୱର ମଧ୍ୟରୁ ଅ ଆ ଏବଂ ହ ଏସବୁ କଣ୍ଠ୍ୟ ଅର୍ଥାତ୍ କଣ୍ଠରୁ ଉଚ୍ଚାରିତ ହୁଅନ୍ତି । ମାତ୍ର ଏ ପ୍ରସଙ୍ଗ ବିସ୍ତାର କରି ଲେଖି-ବାର ଅପ୍ରୟୋଜନୀୟ ଏହି ମାତ୍ର ସ୍ମରଣ ରଖିବା ଉଚିତ କି ଶ ଏହି ଅକ୍ଷର ତାଲବ୍ୟ ଶକାର, ଷ ଏହି ମୂର୍ଦ୍ଧନ୍ୟ ଷକାର ଆଉ ସ ଏ ଦନ୍ତ୍ୟ ସକାର, ଏରୂପେ ତିନ ସକାରର ଭେଦ ଜାଣିବ ।

ଅବର୍ଗୀୟ ଯ ର ଲ ବ ଏଗୁଡ଼ିକ ବର୍ଣ୍ଣ ଅନ୍ତ୍ୟସ୍ଥ ପୁଣି ଶ ଷ ସ ହ ଏଗୁଡ଼ିକ ଉଷ୍ମ ।

---

## ଦ୍ୱିତୀୟ ପ୍ରକରଣ ।

### ବର୍ଣ୍ଣର ସଂଯୋଗ ।

ସ୍ୱର, ବ୍ୟଞ୍ଜନ ଉଭୟ ପ୍ରକାର ଅକ୍ଷର ସାଙ୍କେତିକରୂପେ ଲେଖା ଯାନ୍ତି ଅଥଚ ତଦ୍ୱାରା ଅକ୍ଷର ସଂଯୋଗ କରି ପଦ ରଚନା କରି-ବାର ସୁଗମ ହୁଅଇ ।

### ସ୍ୱରର ସଙ୍କେତ ।

| | | | | | |
|---|---|---|---|---|---|
| ଅ | ସଙ୍କେତ | ୦ | ଌ | ସଙ୍କେତ | ୢ |
| ଆ | ,, | ା | ୡ | ,, | ୣ |
| ଇ | ,, | ି | ଏ | ,, | େ |
| ଈ | ,, | ୀ | ଐ | ,, | ୈ |
| ଉ | ,, | ୁ | ଓ | ,, | ୋ |
| ଊ | ,, | ୂ | ଔ | ,, | ୌ |
| ଋ | ,, | ୃ | ଅଂ | ,, | ଂ |
| ୠ | ,, | ୄ | ଅଃ | ,, | ଃ କିମ୍ବା ଃ |

ଅକାରର କୌଣସି ସାଙ୍କେତିକ ଚିହ୍ନ ନାହିଁ ହେତୁ କ ସେ ସକଳ ବ୍ୟଞ୍ଜନାନ୍ତେ ଉଚ୍ଚରିତ ହୁଏ । ଏହି ସକଳ ସାଙ୍କେତିକ ଚିହ୍ନକୁ ଲୌକିକ ଭାଷାରେ ବାଡି ଓଡା ଇତ୍ୟାଦି କହନ୍ତି ଅଉ ଏହି ଚିହ୍ନ ସଙ୍ଗେ ବ୍ୟଞ୍ଜନ ଯୁକ୍ତ କରିବାର ଯାହାକୁ ବନା କହନ୍ତି । ତାହା ବାଳକମାନେ ଆଗପାଠରେ ଶିଖନ୍ତି ଅତଏବ ଏଠାରେ ତାହା ଲେଖିବାର କିଛି ପ୍ରୟୋଜନ ନାହିଁ । କେବଳ ଜାଣିବ କି ି ୁ ୃ ୢ ଏ ସବୁ ହ୍ରସ୍ୱ ଅଉ ୀ ୂ ୄ ୣ େ ୈ ୋ ୌ ଏମାନେ ଦୀର୍ଘ ସ୍ୱରର ଚିହ୍ନ ।

ବ୍ୟଞ୍ଜନ ନାନା ପ୍ରକାରେ ଅନ୍ୟାନ୍ୟ ବ୍ୟଞ୍ଜନ ସହିତ ଯୁକ୍ତ ହୋଇ କୌଣସି୨ ସ୍ଥଳରେ ରୂପାନ୍ତର ହୁଅନ୍ତି ଅନ୍ୟାନ୍ୟ ସ୍ଥଳରେ ସ୍ୱର ପ୍ରାୟ ମାତ୍ରା ଦ୍ୱାରା ଚିହ୍ନା ଯାନ୍ତି ଏବଂ କେତେକ ଅକ୍ଷର ବିରୂପର

ଅବକାଶରେ ଅର୍ଥାତ୍ ସମ୍ପୂର୍ଣ୍ଣରୂପେ କେବଳ କ୍ଷୁଦ୍ର କର ଅନ୍ୟ ଅକ୍ଷର ତଳେ ଲେଖା ଯାଉ । ବ୍ୟଞ୍ଜନ ସଙ୍ଗେ ସଂଯୋଗ କରିବା ଯାଉଁକୁ ଫଳା କହା ଯାଏ । ତାହା ଏଠାରେ ସମ୍ପୂର୍ଣ୍ଣ କରି ଲେଖିବାର ବୃଥା ।

ଅନୁନାସିକ ଙ ସ୍ୱବର୍ଗ ଅକ୍ଷର ସଙ୍ଗେ ଏବ ଅବର୍ଗୀୟ ବର୍ଣ୍ଣ ସଙ୍ଗେ ଯୁକ୍ତ ହୁଏ । ବର୍ଣ୍ଣ ପୂର୍ବରେ ଥିଲେ ସାନୁନାସିକ ଅକାର ସମାନ ଉଚ୍ଚାରଣ ହୁଏ । ଯଥା, ବଙ୍କା । ସଙ୍ଗ ଇତ୍ୟାଦି । ଞ କେବଳ ସ୍ୱବର୍ଗ ଅକ୍ଷର ସଙ୍ଗେ ଯୁକ୍ତ ହୋଇ ପାରେ । ଏଥିର କେତେକ ପ୍ରକାର ଉଚ୍ଚାରଣ, ବର୍ଣ୍ଣାନ୍ତରେ ଥିଲେ ସାନୁନାସିକ ଇକାର ପ୍ରାୟ ଛଣା ଯାଏ କିନ୍ତୁ ବର୍ଣ୍ଣ ଅଗରେ ଥିଲେ ଅନ୍ ଉଚ୍ଚାରଣ ହୁଏ । ଯଥା, ଅଞ୍ଚଳ । ପଞ୍ଜୁରୀ । ବାଞ୍ଛା ଇତ୍ୟାଦି ।

ଅବଶିଷ୍ଟ ଅନୁନାସିକ ବର୍ଣ୍ଣ କେବଳ ସ୍ୱ ଅକ୍ଷର ସଙ୍ଗେ ଯୁକ୍ତ ହୁଅନ୍ତି । ଏ ପାଠ ଅଙ୍କଫଳା ବୋଲାଏ ।

ତକାରର ଦୁଇ ପ୍ରକାର ସାଙ୍କେତିକ ଚିହ୍ନ । ବର୍ଣ୍ଣ ଅଗରେ ୍ ଏପ୍ରକାର ଚିହ୍ନ ଗ୍ରହଣ କରେ ବର୍ଣ୍ଣ ଶେଷରେ ଥିଲେ ୍ ଏ ଚିହ୍ନ ଦ୍ୱାରା ସଂଯୁକ୍ତ ହୁଏ । ଯଥା, ଯତ୍, ଅନ୍ତ । ତରେ ତ ଯୁକ୍ତ ହେଲେ ତ୍ତ ଏହି ପ୍ରକାର ଲେଖି ଦୁଇ ତ ପ୍ରାୟ ଉଚ୍ଚାରଣ କରିବାକୁ ହେବ ।

ଅବର୍ଗୀୟ ଯକାର ପଦ ଅଦ୍ୟରେ ଥିଲେ ଯକାର ପଦ ମଧ୍ୟରେ ପୁଣି ପଦ ଶେଷରେ ଥିଲେ ୟକାର ପଢା ଯାଏ । କ୍ରମରେ ଉଦାହରଣ, ଯମୁନା । ଯାଦବ । ବୈୟାସକ । ବୈୟାଗ୍ରପାଦ । ନ୍ୟାୟ । ବ୍ୟୟ । ୟକାର ଯକାର ପଶ୍ଚାତ୍ ଥିଲେ କିମ୍ବା ଅନ୍ୟ ବ୍ୟଞ୍ଜନାନ୍ତେ ଥିଲେ ୍ୟ ଏହି ମାତ୍ରା ଦ୍ୱାରା ଅଙ୍କିତ ହୁଏ । ଯଥା, କାର୍ଯ୍ୟ, ଧାର୍ଯ୍ୟ ।

ଅନ୍ତ୍ୟସ୍ଥ ବକାର କେବଳ ସଂସ୍କୃତରେ ପଦ ଅଦ୍ୟରେ କିମ୍ବା ସଂଯୋଗ ବିନା ବ୍ୟବହାର ହୁଏ ମାତ୍ର ଉତ୍କଳ ଭାଷାରେ ତଦ୍ବାରା

କେତେକ ଫଳା ହୁଏ । ତାହା ମାନ ଏହି, ଯଥା, ଦ୍ୱାର । ସ୍ୱର । ତତ୍ତ୍ୱ ଇତ୍ୟାଦି ।

ସଂସ୍କୃତରେ ଶ ଷ ସ ଏହି ତିନି ବ୍ୟଞ୍ଜନର ପୃଥକ୍ ଉଚ୍ଚାରଣ ହୁଏ ଯଥା, ଶଶୀ । ଷଣ୍ଡ । ସମୁଦ୍ର । ମାତ୍ର ଉତ୍କଳ ଭାଷାରେ ବହୁତି ଲୋକେ ସେଥିର ଠିକ ଉଚ୍ଚାରଣ ନ ଜାଣିବାରୁ ସର୍ବତ୍ର ଦନ୍ତ୍ୟ ସକାର ଉଚ୍ଚାରଣ କରନ୍ତି ଏବଂ ଉଚ୍ଚାରଣରେ ଭେଦ ନ ରହିବାରୁ ଲିପିରେ ମଧ୍ୟ ଭେଦ ରହେ ନାହିଁ । ତହିଁର ବିଶେଷ ବ୍ୟବସ୍ଥା ଏ ବ୍ୟାକରଣ ଚତୁର୍ଥ ଭାଗରେ ଲହି ବିଧି ଦେଖିଲେ ଉତ୍ତମରୂପେ ଜାଣିବ ।

[ଏଥିଉତ୍ତାରୁ ବୈୟାକରଣମାନେ ସନ୍ଧିର ନିୟମ ଲେଖି ଥାନ୍ତି ମାତ୍ର ଭାଷା ବ୍ୟାକରଣରେ ସେ ତାଦୃଶ ଗୁରୁତର ନୁହେ ତଥାପି ତଦ୍ବିଷୟରେ ଅଜ୍ଞାତ ହେବାର ଉଚିତ ନୁହେ କାରଣ ଏହି କ ସନ୍ଧିର ନିୟମ ବ୍ୟବହାର ସାଧୁ ଭାଷାରେ ଚଳେ ଏବଂ ତହିଁରେ ଅବଶ୍ୟ ବିଶେଷ ପ୍ରୟୋଜନ ହେଉଅଛି ଅତଏବ ଏହି ପୁସ୍ତକର ଚତୁର୍ଥ ଅଧ୍ୟାୟ ଦେଖିଲେ ସନ୍ଧିର ନିୟମ ଜଣା ଯିବ ।]

ଇତି ବର୍ଣ୍ଣ ଭାଗ ସମାପ୍ତ ।

---

## ଦ୍ୱିତୀୟ ଭାଗରେ ପଦଜ୍ଞାନ ।

### ପ୍ରଥମ ପ୍ରକରଣ ।

### ଅଥ ପଦପ୍ରଭେଦ ।

ରାମ, ମନୁଷ୍ୟ, ପଶୁ, ବୃକ୍ଷ ଏହି ସବୁ ପଦ । ବାସ୍ତବ ସବୁ ଅର୍ଥବୋଧକ ଶବ୍ଦକୁ ପଦ କହନ୍ତି । ପଦ ଦୁଇ ପ୍ରକାର ହୁଏ ଅର୍ଥାତ୍ ବିଶେଷ୍ୟ ବିଶେଷଣ ।

ଯେଉଁ ପଦର ଅର୍ଥସିଦ୍ଧି ପାଇଁ ଅନ୍ୟ ଶବ୍ଦର ପ୍ରୟୋଜନ ବା ଅପେକ୍ଷା ନ ଥାଏ କିମ୍ବା ଯାହା ସ୍ୱୟଂ ଏକାକୀ ଉଚ୍ଚାରିତ ହେଲେ ସ୍ୱାର୍ଥ ପ୍ରତିପନ୍ନ କରେ ସେହି ସକଳ ଶବ୍ଦ ବିଶେଷ୍ୟ ପଦ ବୋଲି ଜାଣିବା ଯଥା, ରାମଚନ୍ଦ୍ର । ଏହି ପଦ ଅନ୍ୟ ଶବ୍ଦ ସାହାଯ୍ୟ ବ୍ୟତି-ରେକେ ସ୍ୱାର୍ଥ ସିଦ୍ଧ ସମ୍ପୂର୍ଣ୍ଣ କରେ ଅତଏବ ଏତାଦୃଶ ପଦ ବିଶେଷ୍ୟ ଜାଣିବ ।

ମାତ୍ର ବିଶେଷ୍ୟ ପଦ ସମ୍ବନ୍ଧରେ କାଳ କି ଗୁଣ ବା କ୍ରିୟା ଯେଉଁ ଶବ୍ଦ ଦ୍ୱାରା ଲକ୍ଷିତ ଅବା କଥିତ ହୁଏ କିମ୍ବା ଯେ ବିଶେଷ୍ୟ ପଦ ବିନା ଅର୍ଥ ରହିତ ହୁଏ କିମ୍ବା ଯେ ବିଶେଷ୍ୟ ପଦକୁ ଅପେକ୍ଷା କରେ ତାକୁ ବିଶେଷଣ ବୋଲି ଯାଏ । ଯଥା, ଅଦ୍ୟ ବୁଦ୍ଧିମାନ୍ ରାମଚନ୍ଦ୍ର ପଢୁଅଛି । ଏ ସ୍ଥଳରେ ରାମଚନ୍ଦ୍ର ବିଶେଷ୍ୟ ପୁଣି ଅଦ୍ୟ ବୁଦ୍ଧିମାନ୍ ପଢୁଅଛି ଏ ସବୁ ବିଶେଷଣ ପଦ । ଏଥିର ପ୍ରସଙ୍ଗ ଆହୁରି ବାହୁଲ୍ୟ-ରୂପେ ପଶ୍ଚାତ୍ ଲେଖା ଯାଇଅଛି । ଏକ ବିଶେଷ୍ୟ ଏବଂ ଏକ ବିଶେ-ଷଣ ପଦ ବ୍ୟତିରେକେ ବାକ୍ୟ ରଚନା ହୋଇ ନ ପାରେ ।

---

## ଦ୍ୱିତୀୟ ପ୍ରକରଣ ।

### ଅଥ ବିଶେଷ୍ୟ ପ୍ରକରଣ—ସଂଜ୍ଞା ।

ବିଶେଷ୍ୟ ପଦ ଦୁଇ ପ୍ରକାର ଅର୍ଥାତ୍ ସଂଜ୍ଞା ପ୍ରତିସଂଜ୍ଞା* ।

ସକଳ ଦୃଶ୍ୟ ବସ୍ତୁର ନାମ ସଂଜ୍ଞାରେ ଅନ୍ତର୍ଗତ । ଯଥା, ମନୁଷ୍ୟ, ସୂର୍ଯ୍ୟ, ପୃଥ୍ୱୀ, ବୃକ୍ଷ ଇତ୍ୟାଦି; ପୁନର୍ବାର ଅଦୃଶ୍ୟ ଅନ୍ତରିନ୍ଦ୍ରିୟ ଗୋଚର ଭାବକୁ ସଂଜ୍ଞା ବୋଲି । ଯଥା, ପ୍ରେମ, ଘୃଣା, ଧର୍ମ, ପାପ ଇତ୍ୟାଦି ଅନେକ ।

---

* କୌଣସି୨ ବୈୟାକରଣମାନେ ସଂଜ୍ଞା ପ୍ରତିସଂଜ୍ଞାକୁ ନାମ ସର୍ବନାମ ବୋଲନ୍ତି ।

ପୁନଶ୍ଚ ପ୍ରଥମେ ସଂଜ୍ଞା ଦୁଇ ପ୍ରକାରରେ ବିଭକ୍ତ ଅର୍ଥାତ ପ୍ରାଣି-ବାଚକସଂଜ୍ଞା ଅପ୍ରାଣିବାଚକସଂଜ୍ଞା । ଯଥା, ମନୁଷ୍ୟ, ଗୋରୁ, ପକ୍ଷୀ, କୀଟ ଇତ୍ୟାଦି ଯେଉଁ ବସ୍ତୁର ପ୍ରାଣ ଅଛି ସେ ସବୁ ପ୍ରାଣି-ବାଚକ । ଅଉ ନିର୍ଜୀବ ବସ୍ତୁ ଯଥା, ଘଟ, ଗୃହ, ପ୍ରସ୍ତର, ଲଗୁଡ ଇତ୍ୟାଦିକୁ ଅପ୍ରାଣିବାଚକସଂଜ୍ଞା ବୋଲି ଯାଏ ।

ମାଏ ସକଳ ସଂଜ୍ଞାପଦ ଏତଦ୍ଭିନ୍ନ ଚାରି ପ୍ରକାରରେ ବିଭକ୍ତ ହୁଅନ୍ତି ଅର୍ଥାତ ନାମବାଚକସଂଜ୍ଞା, ଜାତିବାଚକସଂଜ୍ଞା, ଭାବ-ବାଚକସଂଜ୍ଞା, ଏବଂ କ୍ରିୟାବାଚକସଂଜ୍ଞା । ନାମବାଚକସଂଜ୍ଞା ଏହି । ରାମଚନ୍ଦ୍ର, ଜଗନ୍ନାଥ ଇତ୍ୟାଦି ମନୁଷ୍ୟର ନାମ କିମ୍ବା ଓଡିଶା, କର୍ଣ୍ଣାଟ, ମହାନଦୀ ଇତ୍ୟାଦି ଦେଶ କି ନଗର କି ନଦୀର ନାମ । ଜାତିବାଚକ ଏହି । ମନୁଷ୍ୟ, ଅର୍ଥାତ୍ ମନୁଷ୍ୟ ଜାତି ଯାବନ୍ତ ପ୍ରକାର ସ୍ତ୍ରୀ, ପୁରୁଷଙ୍କୁ ବୁଝାଇବ । ପଶୁ ଅର୍ଥାତ୍ ପଶୁଜାତି ଗୋରୁ, ମୃଗ ଇତ୍ୟାଦି । ବୃକ୍ଷ ଅର୍ଥାତ୍ ସର୍ବପ୍ରକାର ବୃକ୍ଷ, ଆମ୍ର, ପଣସ, କଦମ୍ବ ଇତ୍ୟାଦି । ଭାବବାଚକସଂଜ୍ଞା ଏହି । କ୍ଷୁଧା, ପିପାସା, ହିଂସା, ପ୍ରତ୍ୟାଶା, ବୁଦ୍ଧି, ଅଜ୍ଞାନତା ଇତ୍ୟାଦି ଅନ୍ୟାନ୍ୟ ମାନସିକ ଭାବ କି ଗୁଣ । କ୍ରିୟାବାଚକସଂଜ୍ଞା ଏହି । ଗମନ, ଚଳନ, ମେଳନ, ପାଳନ ଇତ୍ୟାଦି କ୍ରିୟାପଦ । ମାଏ ଉତ୍କଳ ଭାଷାରେ ଏହି ପ୍ରକାର ନିକାଗନ୍ତ କ୍ରିୟାବାଚକସଂଜ୍ଞା ବ୍ୟବହାର ହୁଏ ନାହିଁ, କିନ୍ତୁ 'ଇବା' ଏ ବିଭକ୍ତି ଓଡିଆ କ୍ରିୟାରେ ସଂଲଗ୍ନ କରିବାଦ୍ୱାରା ଭାଷା କ୍ରିୟାବାଚକସଂଜ୍ଞା ପ୍ରାପ୍ତ ହୁଏ । ଯଥା, ଚଳନ ବଦଳରେ ଚଳିବା, ପାଳନ ବଦଳରେ ପାଳିବା, କରଣ ବଦଳରେ କରିବା ଇତ୍ୟାଦି ।

---

## ତୃତୀୟ ପ୍ରକରଣ ।

### ପ୍ରତିସଂଜ୍ଞା ।

ଅମ୍ଭେ, ତୁମ୍ଭେ, ସେ, ଏ, କି, ଯେ, କେହି, ଏ, ଏହିମାନଙ୍କୁ ପ୍ରତିସଂଜ୍ଞା ବୋଲନ୍ତି । ଅଦ୍ୟ ଦ୍ୱୟ ଅମ୍ଭେ, ତୁମ୍ଭେ ସଂସ୍କୃତରେ ଅସ୍ମଦ ଯୁଷ୍ମଦ ବୋଲନ୍ତି । ଏହି ସବୁ ପ୍ରତିସଂଜ୍ଞା ସଂଜ୍ଞା ବଦଳରେ ବ୍ୟବହାର କରା ଯାନ୍ତି । ଯଥା, ପରମେଶ୍ୱର ସର୍ବ ସୃଷ୍ଟିକର୍ତ୍ତା ପରମେଶ୍ୱର ସକଳାନ୍ତର୍ଯାମୀ ଅତଏବ ପରମେଶ୍ୱରଙ୍କୁ ମାନନା କର । ଏହି ସ୍ଥଳରେ ପରମେଶ୍ୱର ଶବ୍ଦ ପୁନଃ୨ ଉକ୍ତ ହେବାର ପାଠ ସୁନ୍ଦର ଲାଗେ ନାହିଁ ମାତ୍ର ସଂଜ୍ଞା ବଦଳରେ ପ୍ରତିସଂଜ୍ଞା ବ୍ୟବହାର କଲେ ଏହି ପୁନରୁକ୍ତିର ଅବଶ୍ୟକତା ନାହିଁ । ଯଥା, ଈଶ୍ୱର ସର୍ବସୃଷ୍ଟିକର୍ତ୍ତା ସେ ସକଳାନ୍ତର୍ଯାମୀ ଅତଏବ ତାଙ୍କୁ ମାନନା କର । ଏଠାରେ ସେ ତାଙ୍କୁ ଏଦୁଇ ପ୍ରତିସଂଜ୍ଞା ପରମେଶ୍ୱର ପରମେଶ୍ୱରଙ୍କୁ ଏଦୁଇ ସଂଜ୍ଞା ବଦଳରେ ଦିଆ ଯାଇଅଛି । ଏଥି ସକାଶେ ପ୍ରତିସଂଜ୍ଞାର ଏହି ବିଶେଷ ଗୁଣ ଜାଣିବ କି ସେ ପୁନରୁକ୍ତି ନାଶ କରି ସଂଜ୍ଞାର ପ୍ରତିନିଧି ହୁଏ । ଏ ବିଷୟ ପ୍ରତିସଂଜ୍ଞା ପ୍ରକରଣରେ ଅଧିକ ବିଶେଷରୂପେ ଲେଖା ଯାଇଅଛି ।

---

## ଚତୁର୍ଥ ପ୍ରକରଣ ।

### ବିଶେଷଣ ପଦ ।

ସଂଜ୍ଞା ପ୍ରତିସଂଜ୍ଞା ବର୍ଜି ଅନ୍ୟ ସକଳ ଶବ୍ଦ ବିଶେଷଣ । ସେହି ବିଶେଷଣ ବହୁ ପ୍ରକାର ହୁଏ ।

ପ୍ରଥମେ ଗୁଣାତ୍ମକ ବିଶେଷଣ । ଯଥା, ସୁନ୍ଦର, ବୁଦ୍ଧିମାନ, ଦୁଷ୍ଟ, କ୍ଷୁଦ୍ର, ସୁସ୍ଥ, ବଧିର ଇତ୍ୟାଦି ଯେତେ ଶବ୍ଦ ବିଶେଷ୍ୟ ପଦର ଗୁଣ କିମ୍ବା ଅବସ୍ଥାକୁ କହନ୍ତି ସେ ଗୁଣାତ୍ମକ ବିଶେଷଣ । ଯଥା, ସୁନ୍ଦର

ପୁଷ୍ପ, ଏଠାରେ ପୁଷ୍ପର ଯେଉଂ ଗୁଣ ଅର୍ଥାତ୍ ସୌନ୍ଦର୍ଯ୍ୟ ତାହା ଗୁଣାତ୍ମକ ବିଶେଷଣ ଅର୍ଥାତ୍ ସୁନ୍ଦର ପଦ ଦ୍ୱାରା ଉକ୍ତ ହୁଏ ।

ଦ୍ୱିତୀୟରେ କ୍ରିୟାତ୍ମକ ବିଶେଷଣ । ଯଥା, ମେଘ ଗର୍ଜୁଅଛୁ, ଏଠାରେ ଗର୍ଜୁଅଛୁ ଏହି ଶବ୍ଦ କ୍ରିୟାତ୍ମକ ବିଶେଷଣ । ତଦ୍ରୂପେ ବୃଷ୍ଟି ହେଉଅଛୁ, ପାଠ କରୁଅଛୁ ଇତ୍ୟାଦି ସ୍ଥଳରେ କ୍ରିୟା ପଦକୁ କ୍ରିୟାତ୍ମକ ବିଶେଷଣ ବୋଲି ଯାଏ ।

ଆଉ କେତେକ ପ୍ରକାର ବିଶେଷଣ ଏଠାରେ ବିଶେଷ କରି ନ ଲେଖି ସଂକ୍ଷେପରେ ଏକତ୍ର ଲେଖା ଯାଉଅଛୁ । ଯଥା, ଏବେ, ତେବେ, ଯେବେ, କେବେ, ଅଦ୍ୟ, କଲ୍ୟ ଇତ୍ୟାଦି । ପ୍ରାୟ, ଅନୁସାରେ, କ୍ରମେ, କେତେ, ଯେତେ, ରୂପେ, ଶୀଘ୍ରେ, ଧୀରେ, ଏଠାରେ, ସେଠାରେ, ଅତି, ଅତିଶୟ, ଅଳ୍ପ, ବହୁତ, ଦୈବାତ୍ ଇତ୍ୟାଦି ଅନେକ, କାଳ ବା ସ୍ଥାନ ବା ପରିମାଣ ଅନ୍ୟାନ୍ୟ ବିଷୟ ପ୍ରକାଶକ ଶବ୍ଦମାନ ବିଶେଷଣ ପଦ ମଧ୍ୟରେ ଗଣା ଯାନ୍ତି ।

ଅପର, ପୁନଶ୍ଚ, ପୁନର୍ବାର, ପୁଣି, ଏବଂ, ଆଉ, ଅଧିକ ଇତ୍ୟାଦି କେତେକ ଶବ୍ଦ ପ୍ରାୟ ସବୁ ଯୌଗିକ ବିଶେଷଣ ଅର୍ଥାତ୍ ଇହା ଦ୍ୱାରା ବାକ୍ୟର ଏକ ଅବୟବ ଅନ୍ୟ ଅବୟବରେ ସଂଯୁକ୍ତ ହୋଇ ବାକ୍ୟ ପ୍ରତିପନ୍ନ ହୁଏ ।

ଓ, ହା, ହାୟ, ଧିକ୍ ଇତ୍ୟାଦି ବିସ୍ମୟ ବା ଖେଦବୋଧକ ଅବ୍ୟୟ ଶବ୍ଦକୁ ନିକ୍ଷେପୋକ୍ତି ଅର୍ଥାତ୍ ଭାବାର୍ଥ ବିଶେଷଣ ବୋଲନ୍ତି ।

---

## ପଞ୍ଚମ ପ୍ରକରଣ ।

### ସଂଜ୍ଞାର ରୂପ ।

ବଚନ, ରୂପ, ଲିଙ୍ଗ, ଏତିନି ସଂଜ୍ଞାର ମୁଖ୍ୟ ବିଷୟ ।

ସଂସ୍କୃତ ଓ ଅନ୍ୟ କୌଣସି ଭାଷାରେ ତିନି ବଚନ ଅର୍ଥାତ୍ ଏକବଚନ, ଦ୍ୱିବଚନ, ବହୁବଚନ, ମାତ୍ର ଭାଷାରେ କେବଳ ଦ୍ୱିବଚନ

ନାହିଁ । ଏକତ୍ୱବୋଧକ ପଦ ଏକବଚନ ଏବଂ ଏକର ଅଧିକ କିମ୍ବା ବହୁତ୍ୱବୋଧକ ଶବ୍ଦ ବହୁବଚନ ହୁଏ । ଯଥା, ଏକବଚନ ମନୁଷ୍ୟ । ବହୁବଚନ ମନୁଷ୍ୟମାନେ ।

ସଂଜ୍ଞା ସକଳ ସପ୍ତ ବିଭକ୍ତି ଦ୍ୱାରା ରୂପ ହୁଅନ୍ତି । ସେହି ରୂପର ନାମ ସଂସ୍କୃତ ରୀତ୍ୟନୁସାରେ ଏହି ପ୍ରକାର

| | | | | | |
|---|---|---|---|---|---|
| ପ୍ରଥମା | ଅର୍ଥାତ୍ | କର୍ତ୍ତା | ପଞ୍ଚମୀ | ଅର୍ଥାତ୍ | ଅପାଦାନ |
| ଦ୍ୱିତୀୟା | ,, | କର୍ମ | ଷଷ୍ଠୀ | ,, | ସମ୍ବନ୍ଧ |
| ତୃତୀୟା | ,, | କରଣ | ସପ୍ତମୀ | ,, | ଅଧିକରଣ |
| ଚତୁର୍ଥୀ | ,, | ସମ୍ପ୍ରଦାନ | | | |

ଏତଦ୍ଭିନ୍ନ ଅଷ୍ଟମୀ ଅର୍ଥାତ୍ ସମ୍ବୋଧନ ଏହି କାରକ ମଧ୍ୟରେ ଗଣିତ ନୁହେ ।

ପ୍ରଥମାକୁ ବର୍ଜି ଅବଶିଷ୍ଟ ଛ କାରକର ବିଭକ୍ତି ଏହି

| | |
|---|---|
| ପ୍ରଥମା ——— | ୦ |
| ଦ୍ୱିତୀୟା ——— | କୁ |
| ତୃତୀୟା ——— | ରେ |
| ଚତୁର୍ଥୀ ——— | କୁ |
| ପଞ୍ଚମୀ ——— | ରୁ |
| ଷଷ୍ଠୀ ——— | ର |
| ସପ୍ତମୀ ——— | ରେ |

ଏହି କେତେକ ବିଭକ୍ତି ଦ୍ୱାରା କି ସଂଜ୍ଞା କି ପ୍ରତିସଂଜ୍ଞା ସର୍ବ-ପ୍ରକାର ବିଶେଷ୍ୟ ପଦ ସାଧନ ହୁଅନ୍ତି । ମାତ୍ର ବ୍ୟକ୍ତିବାଚକ ଅଉ ଦ୍ରବ୍ୟବାଚକ ସଂଜ୍ଞା ଉପରେ କିଞ୍ଚିତ୍ ପ୍ରଭେଦ ଜଣା ଯାଏ । ବ୍ୟକ୍ତି-ବାଚକ ସଂଜ୍ଞାରେ ତୃତୀୟାର 'ରେ' ବିଭକ୍ତି ପ୍ରାୟ କେତେବେଳେ ପ୍ରୟୋକ୍ତବ୍ୟ ନୁହଇ ମାତ୍ର ତାହା ପରବର୍ତ୍ତିରେ 'ଦ୍ୱାରା' କିମ୍ବା 'କର୍ତ୍ତୃକ' ଇତ୍ୟାଦି ଅନ୍ୟ କୌଣସି ଶବ୍ଦ ସଂଯୋଗରେ ବ୍ୟକ୍ତିବାଚକ ସଂଜ୍ଞାର

ତୃତୀୟା ହୁଏ । ଯଥା, ପଣ୍ଡିତ ଦ୍ୱାରା କିମ୍ବା ପଣ୍ଡିତକର୍ତ୍ତୃକ ଏହି ପୁସ୍ତକ ରଚିତ ହେଲା ।

ପୁନର୍ବାର ପଞ୍ଚମୀର ରୁ ସପ୍ତମୀର ରେ ଏହି ଦୁଇ ବିଭକ୍ତି କେତେବେଳେ ମନୁଷ୍ୟବାଚକ ଶବ୍ଦ ଶେଷରେ ପ୍ରଯୁକ୍ତ ହୁଅନ୍ତି ନାହିଁ । ତାହା ବଦଳରେ ଠାରୁ, ଠାରେ ଏବଂ ଅତି ମାନ୍ୟ ସ୍ଥଳରେ ନିକଟରୁ, ନିକଟରେ ଆଦେଶ ହୋଇ ପଞ୍ଚମୀ, ସପ୍ତମୀର ରୂପ ହୁଏ । ଯଥା, ମନୁଷ୍ୟଠାରୁ । ପିତାଙ୍କଠାରେ । ରାଜାଙ୍କ ନିକଟରେ ଇତ୍ୟାଦି ।

ପୁନଶ୍ଚ ଯେତେ ବ୍ୟକ୍ତିବାଚକ ସଂଜ୍ଞାରେ ଗୌରବ କିମ୍ବା ମାନ୍ୟତା ଅଭିପ୍ରେତ ହୁଏ ସେହି ସବୁ ଶବ୍ଦ ବିଭକ୍ତି ଗ୍ରହଣ ସମୟରେ ତୃତୀୟା, ଚତୁର୍ଥୀର କୁ ବିଭକ୍ତି ଙ୍କୁ ହୁଏ ପୁଣି ତୃତୀୟା, ପଞ୍ଚମୀ, ଷଷ୍ଠୀ, ସପ୍ତମୀ, ବିଭକ୍ତି ଅଗ୍ରେ ଙ୍କ ଆଦେଶ ହୁଏ । ଯଥା, ରାଜାଙ୍କୁ, ରାଜାଙ୍କଠାରେ ଇତ୍ୟାଦି ।

## ବ୍ୟକ୍ତିବାଚକ ସଂଜ୍ଞା ସାଧନ ।

### ମନୁଷ୍ୟ ଶବ୍ଦ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ମନୁଷ୍ୟ | ମନୁଷ୍ୟମାନେ |
| ଦ୍ୱିତୀୟା । | ମନୁଷ୍ୟକୁ | ମନୁଷ୍ୟମାନଙ୍କୁ |
| ତୃତୀୟା । | ମନୁଷ୍ୟଦ୍ୱାରା | ମନୁଷ୍ୟମାନଙ୍କଦ୍ୱାରା |
| ଚତୁର୍ଥୀ । | ମନୁଷ୍ୟକୁ | ମନୁଷ୍ୟମାନଙ୍କୁ |
| ପଞ୍ଚମୀ । | ମନୁଷ୍ୟଠାରୁ | ମନୁଷ୍ୟମାନଙ୍କଠାରୁ |
| ଷଷ୍ଠୀ । | ମନୁଷ୍ୟର | ମନୁଷ୍ୟମାନଙ୍କର |
| ସପ୍ତମୀ । | ମନୁଷ୍ୟଠାରେ | ମନୁଷ୍ୟମାନଙ୍କଠାରେ |
| ସମ୍ବୋଧନ । | ହେ ମନୁଷ୍ୟ | ହେ ମନୁଷ୍ୟମାନେ । |

ମନୁଷ୍ୟ ଶବ୍ଦର ଯେ ପ୍ରକାର ରୂପ ହୋଇଅଛି ସେହି ପ୍ରକାରେ

ପୁତ୍ର, କନ୍ୟା, ଗୁରୁ, ଶିଷ୍ୟ, ବନ୍ଧୁ, ମିତ୍ର, ଶତ୍ରୁପ୍ରଭୃତି ସକଳ ବ୍ୟକ୍ତି-ବାଚକ ଏବଂ ଅନ୍ୟ ପ୍ରାଣିବାଚକ ସଂଜ୍ଞା ସାଧନ କରିବ । ମାତ୍ର ପଶୁବାଚକ ସଂଜ୍ଞା ପଞ୍ଚମୀ, ସପ୍ତମୀରେ ରୁ, ରେ ପ୍ରୟୋଗ ହୁଏ ।

ନାରୀ ଶବ୍ଦ ସାଧନ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ନାରୀ | ନାରୀମାନେ |
| ଦ୍ୱିତୀୟା । | ନାରୀକୁ | ନାରୀମାନଙ୍କୁ |
| ତୃତୀୟା । | ନାରୀଦ୍ୱାରା | ନାରୀମାନଙ୍କଦ୍ୱାରା |
| ଚତୁର୍ଥୀ । | ନାରୀକୁ | ନାରୀମାନଙ୍କୁ |
| ପଞ୍ଚମୀ । | ନାରୀଠାରୁ | ନାରୀମାନଙ୍କଠାରୁ |
| ଷଷ୍ଠୀ । | ନାରୀର | ନାରୀମାନଙ୍କର |
| ସପ୍ତମୀ । | ନାରୀଠାରେ | ନାରୀମାନଙ୍କଠାରେ |
| ସମ୍ବୋଧନ । | ହେ ନାରି | ହେ ନାରିମାନେ । |

ଏହିରୂପେ ସ୍ତ୍ରୀଲିଙ୍ଗ (ଦୀର୍ଘ) ଈକାରାନ୍ତ ଶବ୍ଦମାନଙ୍କୁ ରୂପ କରିବ । ଯଥା, ଲକ୍ଷ୍ମୀ, ଗୌରୀ, ଦେବୀ, ଯୁବତୀପ୍ରଭୃତି । ଏ ଶବ୍ଦ ସକଳର ସମ୍ବୋଧନରେ ଈକାର ହ୍ରସ୍ୱ, ଅନ୍ୟ ସବୁ କାରକରେ ଦୀର୍ଘ । ଦୀର୍ଘ ଊକାରାନ୍ତ ଶବ୍ଦ ସବୁ ତଦ୍ରୂପ ।

ସ୍ୱାମୀ ଶବ୍ଦ ସାଧନ ।

| | | |
|---|---|---|
| ପ୍ରଥମା । | ସ୍ୱାମୀ | ଏରୂପେ ମାନ ଆଦେଶରେ ବହୁବଚନ ସିଦ୍ଧ ହେବ । |
| ଦ୍ୱିତୀୟା । | ସ୍ୱାମିକୁ | |
| ତୃତୀୟା । | ସ୍ୱାମିଦ୍ୱାରା | |
| ଚତୁର୍ଥୀ । | ସ୍ୱାମିକୁ | |
| ପଞ୍ଚମୀ । | ସ୍ୱାମିଠାରୁ | |
| ଷଷ୍ଠୀ । | ସ୍ୱାମିର | |
| ସପ୍ତମୀ । | ସ୍ୱାମିଠାରେ | |
| ସମ୍ବୋଧନରେ । | ହେ ସ୍ୱାମିନ୍ | |

ଜ୍ଞାତା, ଧାତା, କର୍ମକାରୀ ଇତ୍ୟାଦି ପୁଂଲିଙ୍ଗ ଶବ୍ଦମାନଙ୍କୁ ଏହିରୂପେ ସାଧନ କରିବ ।

ଅକାରାନ୍ତ, ଇକାରାନ୍ତ, ଈକାରାନ୍ତ, ଉକାରାନ୍ତ, ଊକାରାନ୍ତ ଏବଂ ବାନ୍, ମାନ୍ ଇତ୍ୟାଦି ପ୍ରତ୍ୟୟାନ୍ତ ଶବ୍ଦମାନଙ୍କର ସମ୍ବୋଧନରେ କିଞ୍ଚିତ ପ୍ରଭେଦ ଅଛି । ତାହା ୧୮ ପୃଷ୍ଠରେ ନବମ ବିଧାନ ଦେଖିଲେ ଅବଗତ ହେବ ।

## ରାଜା ଶବ୍ଦ ସାଧନ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ରାଜା | ରାଜାମାନେ |
| ଦ୍ୱିତୀୟା । | ରାଜାଙ୍କୁ | ରାଜାମାନଙ୍କୁ |
| ତୃତୀୟା । | ରାଜାଙ୍କଦ୍ୱାରା | ରାଜାମାନଙ୍କଦ୍ୱାରା |
| ଚତୁର୍ଥୀ । | ରାଜାଙ୍କୁ | ରାଜାମାନଙ୍କୁ |
| ପଞ୍ଚମୀ | ରାଜାଙ୍କଠାରୁ | ରାଜାମାନଙ୍କଠାରୁ |
| ଷଷ୍ଠୀ । | ରାଜାଙ୍କର | ରାଜାମାନଙ୍କର |
| ସପ୍ତମୀ । | ରାଜାଙ୍କଠାରେ | ରାଜାମାନଙ୍କଠାରେ |
| ସମ୍ବୋଧନ । | ହେ ରାଜା ବା ରାଜନ୍ | ହେ ରାଜାମାନେ |

ଏହିରୂପେ ମାତା, ପିତା, ଗୁରୁ ଇତ୍ୟାଦି ଯେଉଁ ଶବ୍ଦରେ ଦେଶ ବ୍ୟବହାରାନୁସାରେ ଗୌରବ କି ମାନ୍ୟତା ପ୍ରୟୋଗ ହୁଏ ସେହି ସବୁ ଶବ୍ଦର ସାଧନ ଜାଣିବ । କେବଳ ସମ୍ବୋଧନରେ ପିତୃ ଶବ୍ଦର ହେ ପିତଃ, ମାତୃ ଶବ୍ଦର ହେ ମାତଃ । ଗୁରୁ ଶବ୍ଦର ହେ ଗୁରୋ ଇତ୍ୟାଦି, ଷଷ୍ଠ ପ୍ରକରଣର ନବମ ସୂତ୍ର ଦେଖ ।

## ଅପ୍ରାଣିବାଚକ ଶବ୍ଦ ସାଧନ ।

### ଖଡ୍ଗ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ଖଡ୍ଗ | ଖଡ୍ଗମାନେ |
| ଦ୍ୱିତୀୟା । | ଖଡ୍ଗକୁ | ଖଡ୍ଗମାନଙ୍କୁ |
| ତୃତୀୟା । | ଖଡ୍ଗରେ | ଖଡ୍ଗମାନଙ୍କରେ |
| ଚତୁର୍ଥୀ । | ଖଡ୍ଗକୁ | ଖଡ୍ଗମାନଙ୍କୁ |
| ପଞ୍ଚମୀ । | ଖଡ୍ଗରୁ | ଖଡ୍ଗମାନଙ୍କରୁ |
| ଷଷ୍ଠୀ । | ଖଡ୍ଗର | ଖଡ୍ଗମାନଙ୍କର |
| ସପ୍ତମୀ । | ଖଡ୍ଗରେ | ଖଡ୍ଗମାନଙ୍କରେ |
| ସମ୍ବୋଧନ । | ହେ ଖଡ୍ଗ | ହେ ଖଡ୍ଗମାନେ |

ଏହିରୂପେ କଲମ, ହସ୍ତ, ପାଦ, ଅକ୍ଷି, ବୃକ୍ଷ ଯାବନ୍ତ ଦ୍ରବ୍ୟବାଚକ, ଭାବବାଚକ କ୍ରିୟାବାଚକ ସଂଜ୍ଞାର ରୂପ ଜାଣିବ ।

---

## ଷଷ୍ଠ ପ୍ରକରଣ ।

### ବଚନାଦିର ବିଶେଷ ବିବେଚନା ।

୧ । ଭାଷା ରୀତ୍ୟନୁସାରେ ଅପ୍ରାଣିବାଚକସଂଜ୍ଞାର ସର୍ବସ୍ଥଳରେ ବହୁବଚନରେ ମାନ ଆଦେଶ ଅନୁପଯୁକ୍ତ । ଯଥା, ଖଡ୍ଗ କହିଲେ ଏକ କିମ୍ବା ଅନେକ ଖଡ୍ଗକୁ ବୁଝାଇବ ପୁଣି ବୃକ୍ଷ ଏହି ଶବ୍ଦରେ ଏକ କିମ୍ବା ଅଧିକ ବୃକ୍ଷ ବୁଝା ଯାଏ । ଫଳତଃ ପ୍ରାୟ କେବଳ ମନୁଷ୍ୟବାଚକ ଶବ୍ଦର ବହୁବଚନ ପ୍ରୟୋଗରେ ଏକବଚନର ରୂପ ରହେ ନାହିଁ ।

୨ । ଯଦ୍ୟପି ମାନ ଆଦେଶରେ ସର୍ବସାଧାରଣରୂପେ ବହୁବଚନ ବୋଧ ହୁଏ ତଥାପି ପ୍ରାଣିବାଚକସଂଜ୍ଞାର ବହୁତ୍ୱଜ୍ଞାନ ଅନ୍ୟ

ପ୍ରକାରେ ଉକ୍ତ ହୋଇ ପାରେ ଅର୍ଥାତ୍ ଦ୍ୱିତୀୟା ଚତୁର୍ଥୀରେ କୁ ବଦ-ଳରେ କୁଁ । ତୃତୀୟା, ପଞ୍ଚମୀ, ଷଷ୍ଠୀ, ସପ୍ତମୀ, ଅଗ୍ରରେ ଙ୍କ ଲେଖିଲେ ବହୁବଚନାର୍ଥ ପ୍ରତିପାଦନ ହୁଅଇ । ଯଥା, ଏକବଚନରେ ମନୁ-ଷ୍ୟକୁ, ବହୁବଚନରେ ମନୁଷ୍ୟଙ୍କୁ । ଷଷ୍ଠୀ ଏକବଚନରେ ମନୁଷ୍ୟର, ବହୁବଚନରେ ମନୁଷ୍ୟଙ୍କର ଇତ୍ୟାଦି ।

୩ । ପୁନଶ୍ଚ ଲୋକ ଶବ୍ଦ ବହୁବଚନ ପ୍ରଥମାରେ ଲୋକେ ଅଉ ଅନ୍ୟ କେତେକ ଶବ୍ଦର ଏହି ପ୍ରକାରେ ଏ ଆଦେଶରେ ବହୁତ୍ଵ ଜ୍ଞାନ ହୁଏ । ଯଥା, ବାଳକେ । ଲୋକେ । ମୂର୍ଖେ । ପଣ୍ଡିତେ ଇତ୍ୟାଦି ।

୪ । ସମୂହ ଅର୍ଥ ଶବ୍ଦରେ ପ୍ରଥମାରେ ବହୁବଚନ ହୁଏ ନାହିଁ ବିକଳ୍ପରେ । ଯଥା, ତାବତ୍ ପଣ୍ଡିତ ନତୁବା ତାବତ୍ ପଣ୍ଡିତମାନେ । ସକଳ ଲୋକ ବା ସକଳ ଲୋକେ । ତଦ୍ରୂପେ ସଂଖ୍ୟାବାଚକ ଶବ୍ଦ ଯୋଗରେ ହେବ ।

୫ । ଅପର କାଳବାଚକସଂଜ୍ଞା ; ଯଥା, ନିମିଷ, ପ୍ରହର, ଦିନ, ମାସ, ବର୍ଷ । ପରିମାଣବାଚକସଂଜ୍ଞା ; ଯଥା, ସେର, ମହଣ ଇତ୍ୟାଦି ଭାଷା ଶବ୍ଦ ଏବଂ ହାତ, କ୍ରୋଶ ଇତ୍ୟାଦିର ପୃଥକ୍ ବହୁବଚନ ନାହିଁ । ଏହି ପ୍ରକାର ସକଳ ପଦର ଏକତ୍ୱ ବୋଧାର୍ଥେ ଭାଷା ରୀତି ପ୍ରମାଣେ ଶେଷରେ ଏକାର ଆଦେଶ ହୁଏ । ଯଥା, ନିମିଷେ ଅର୍ଥାତ୍ ଏକ ନିମିଷ । ପ୍ରହରେ, ଦିନେ, ଏବଂ ସେରେ, ମହଣେ, ହାତେ, କ୍ରୋଶେ ଇତ୍ୟାଦି । ଅର୍ଥାତ୍ ଏକ ଦିନ, ଏକ ମହଣ ଇତ୍ୟାଦି । ବହୁତ୍ୱ ବୋଧାର୍ଥେ ଏହି ପ୍ରକାର ପଦ ଅଗ୍ରେ ସଂଖ୍ୟାନୁସାରେ ଦୁଇ ଶହ ଛ ଇତ୍ୟାଦି ସଂଖ୍ୟାବୋଧକ ପଦ ଲେଖା ଯାଏ । ଖଣ୍ଡେ, ଭାଗେ, ଫାଳେ, ପ୍ରସ୍ଥେ, ଜଣେ ଇତ୍ୟାଦି କେତେକ ଶବ୍ଦର ଏକ-ବଚନ ଏହିରୂପେ ଆଦେଶ ହୁଏ ।

୬ । ସଂସ୍କୃତ ଇକାରାନ୍ତ ପୁଂଲିଙ୍ଗ ଶବ୍ଦର ପ୍ରଥମା ଛାଡ଼ି ଅନ୍ୟ ଛ କାରକ ଉପରେ ବିଭକ୍ତି ଗ୍ରହଣ ସମୟରେ ଇକାର ଅନ୍ୟଥା

ହୋଇ ଇକାର ଆଦେଶ ହୁଏ ଯଥା, ପ୍ରଥମାରେ ଅଧିକାରୀ, ଦ୍ୱିତୀୟାରେ ଅଧିକାରୀକୁ, ତୃତୀୟାରେ ଅଧିକାରୀଦ୍ୱାରା ଇତ୍ୟାଦି । ଏହିରୂପ କର୍ମକାରୀ, ସାକ୍ଷୀ, ଜ୍ଞାନୀ, ଧନୀ, ପକ୍ଷୀ ଇତ୍ୟାଦି । ମାତ୍ର ସ୍ତ୍ରୀ-ଲିଙ୍ଗ ଈକାରାନ୍ତ ଶବ୍ଦ ଉତ୍ତରେ ଈକାର ଅନ୍ୟଥା ହୁଏ ନାହିଁ । ଯଥା, ପ୍ରଥମାରେ ଅଧିକାରଣୀ । ଦ୍ୱିତୀୟାରେ ଅଧିକାରଣୀକୁ । ତୃତୀୟାରେ ଅଧିକାରଣୀଦ୍ୱାରା ଇତ୍ୟାଦି ।

୭ । ଷଷ୍ଠୀର ରକାର ଅନେକ ସ୍ଥଳରେ ଭାଷା ବ୍ୟବହାରକ୍ରମେ ଲୋପ ହୁଏ । ଯଥା, ରାଜାଙ୍କର ସୈନ୍ୟ । ରାଜାଙ୍କ ସୈନ୍ୟ । ତୁମ୍ଭର ଘର । ତୁମ୍ଭ ଘର । ମାତ୍ର ଷଷ୍ଠୀ ବାକ୍ୟ ଶେଷରେ ଥିଲେ ରକାର ଲୋପ ହେବ ନାହିଁ । ଯଥା, ଏ ସୈନ୍ୟ ରାଜାଙ୍କର । ଏ ଘର ତୁମ୍ଭର ଇତ୍ୟାଦି ।

୮ । ସମ୍ବୋଧନର ପୃଥକ୍ ବିଭକ୍ତି ନାହିଁ, ଯାହା ଦ୍ୱାରା ସେ କର୍ମ, କର୍ତ୍ତା ଇତ୍ୟାଦି ନ୍ୟାୟ ରୂପ ହୋଇ ପାରେ । ମାତ୍ର ଭାଷାରେ ହେ, ରେ, ଏହି ପ୍ରକାର ପୃଥକ୍ ଶବ୍ଦ ସଂଜ୍ଞା ଅବ୍ୟରେ ବା ଅନ୍ତରେ ସଂଯୋଗ ହୋଇ ସମ୍ବୋଧନ ଅର୍ଥକୁ ବୁଝାଏ ।

୯ । ସଂସ୍କୃତ ବ୍ୟାକରଣାନୁସାରେ ସମ୍ବୋଧନ ଏହି ପ୍ରକାର ହୁଏ ଯଥା, ଭାର୍ଯ୍ୟା, ହେ ଭାର୍ଯ୍ୟେ । ହରି, ହେ ହରେ । ମୁରାରି, ହେ ମୁରାରେ । ସଖି, ହେ ସଖେ । ପ୍ରଭୁ, ହେ ପ୍ରଭୋ । ବନ୍ଧୁ, ହେ ବନ୍ଧୋ । ନାରୀ, ହେ ନାରି । ଲକ୍ଷ୍ମୀ, ହେ ଲକ୍ଷ୍ମି । ବଧୂ, ହେ ବଧୁ । ପିତା, ହେ ପିତଃ । ମାତା, ହେ ମାତଃ । ପୁନର୍ବାର ବାନ୍, ମାନ୍ ଶବ୍ଦାନ୍ତ ସଂଜ୍ଞା ସମ୍ବୋଧନରେ ଏରୂପ । ଯଥା, ଜ୍ଞାନବାନ୍, ହେ ଜ୍ଞାନବନ୍ । ବୁଦ୍ଧି-ମାନ୍, ହେ ବୁଦ୍ଧିମନ୍ । ଶ୍ରୀମାନ୍, ହେ ଶ୍ରୀମନ୍ । ଏହିରୂପେ ମତିମାନ୍, ଧନବାନ୍, ବିଦ୍ୟାବାନ୍, ଇତ୍ୟାଦି । ମହାନ୍ ଶବ୍ଦ ସମ୍ବୋଧନରେ ହେ ମହନ୍ । ରାଜା ସମ୍ବୋଧନରେ ହେ ରାଜନ୍ । ଯୁବା, ହେ ଯୁବନ୍ । ଜ୍ଞାନୀ, ହେ ଜ୍ଞାନିନ୍ । ଏରୂପେ ସଂସ୍କୃତ ବ୍ୟାକରଣାନୁସାରେ ସମ୍ବୋ-

ଧନ ପ୍ରତିପନ୍ନ ହୁଏ ମାଏ ଏହି ବ୍ୟବହାର ଭାଷାରେ ସର୍ବଏ କର୍ତ୍ତବ୍ୟ ଏହି ଅଭିପ୍ରାୟ ନୁହେ ।

---

## ସପ୍ତମ ପ୍ରକରଣ ।

### ପ୍ରତିସଂଜ୍ଞାର ପ୍ରସଙ୍ଗ ।

ଯେଉଁରୂପେ ସଂଜ୍ଞା ବିଭକ୍ତି ସହିଯୋଗରେ ରୂପ ହୁଏ ସେହି-ରୂପେ ପ୍ରତିସଂଜ୍ଞା ରୂପ ହେବ ।

ଅମ୍ଭେ, ତୁମ୍ଭେ, ସେ, ଯେ, କିଏ, ଆପଣ, କେହି, ଏ, ବ୍ୟକ୍ତି-ବାଚକ ପ୍ରତିସଂଜ୍ଞା ହୋଇ ବ୍ୟକ୍ତିବାଚକ ସଂଜ୍ଞା ତୁଲ୍ୟ ରୂପ ହୁଅନ୍ତି । ସେ ପ୍ରଥମ ପୁରୁଷ, ତୁମ୍ଭେ ମଧ୍ୟମ ପୁରୁଷ, ଅମ୍ଭେ ଉତ୍ତମ ପୁରୁଷ ।

ଯେଉଁ ପ୍ରତିସଂଜ୍ଞା ଅନ୍ୟ କାହାର ପ୍ରତିପାଦକ ନ ହୋଇ ବିଶେଷ ବକ୍ତାକୁ କହେ ସେ ଉତ୍ତମ ପୁରୁଷ ଅର୍ଥାତ୍ ଅମ୍ଭେ ।

ପୁନର୍ବାର ଯାହାକୁ ପ୍ରତି ବାକ୍ୟ ପ୍ରୟୋଗ ହୁଅଇ ସେ ମଧ୍ୟମ ପୁରୁଷ ଅର୍ଥାତ୍ ତୁମ୍ଭେ ।

ଯେଉଁ ପ୍ରତିସଂଜ୍ଞା ଅପର କୌଣସି ବ୍ୟକ୍ତି କିମ୍ବା ପଦାର୍ଥ ଯାହା ପୂର୍ବରେ କଥିତ କି ଅଭିପ୍ରେତ ହୋଇ ଥାଏ ତାହା ନାମର ପ୍ରତି-ନିଧି ହୁଏ ସେ ପ୍ରଥମ ପୁରୁଷ ବୋଲାଏ ଅର୍ଥାତ୍ ସେ । ଯଦ୍ୟପି ଉକ୍ତ ବା ଅଭିପ୍ରେତ ବ୍ୟକ୍ତି ବା ପଦାର୍ଥ ପ୍ରତ୍ୟକ୍ଷ ହୋଇ ନ ଥିବ କିମ୍ବା ଛିସ୍ଥବନ୍ତର ଥିବ ତେବେ ସେ ବ୍ୟବହାର ହେବ ମାତ୍ର ଯେବେ ନିକଟେ ବା ସାକ୍ଷାତ୍ ଉପସ୍ଥିତ ଥିବ ତେବେ ଏ ପ୍ରତିସଂଜ୍ଞା ପ୍ରୟୋଗ ହୁଏ ।

କିଏ, କି, କଣ ଏହି ତିନ ପ୍ରଶ୍ନବାଚକ ପ୍ରତିସଂଜ୍ଞା । ପ୍ରଶ୍ନର ବିଷୟ ଯଦ୍ୟପି ବ୍ୟକ୍ତି ହୋଇଥାଏ ତେବେ କିଏ ପ୍ରୟୋଗ ହୁଏ । ଯଥା, ଏ ପୁସ୍ତକ କିଏ ରଚନା କଲା । କି, କଣ ଏ ଦୁଇ ପ୍ରଶ୍ନର ବିଷୟ ପଦାର୍ଥ ଥିଲେ ପ୍ରୟୋଗ ହୁଅନ୍ତି । ଯଥା, ଏ କି ପୁସ୍ତକ । ବ୍ୟାକରଣ । ମାତ୍ର କଣ ଲୌକିକ ଭାଷା ଏବଂ ବଙ୍ଗଦେଶ ସମୀପ

ବାସି ଓଡ଼ିଆ ଲୋକଙ୍କ ମଧ୍ୟରେ କ, କଣ ବଦଳରେ କସ ଚଳେ । କହିବା ସମୟରେ କସ୍ୱେ, କେ ପ୍ରାୟ ଉଚ୍ଚାରଣ ହୁଅଇ ।

ସେଇ, ସେହି ଏତଦ୍ଵୟ ସେ ପ୍ରତିସଂଜ୍ଞା ପ୍ରାୟ ହୁଏ କେବଳ ଅଭିପ୍ରେତ ଅର୍ଥକୁ କିଞ୍ଚିତ୍ ବିଶେଷରୂପେ କହନ୍ତି । ତଦ୍ଵତ୍ ଏଇ, ଏହି ବିଶେଷାର୍ଥ ବୋଧକ ହୋଇ ଏ ପ୍ରତିସଂଜ୍ଞାର୍ ଉଦିତ । ଇତର ଲୋକଙ୍କ ମଧ୍ୟରେ ଏ, ଏ୍ୟ ଉଚ୍ଚାରଣ ହୁଏ ।

ଅପେ, ନିଜେ ଏହି ମଧ୍ୟ ପ୍ରତିସଂଜ୍ଞା ମଧ୍ୟରେ ଗଣିତ ବ୍ୟକ୍ତି-ବାଚକ ଅନ୍ୟାନ୍ୟ ପ୍ରତିସଂଜ୍ଞାରେ ସଂଲଗ୍ନ ହୋଇ ଅର୍ଥକୁ ବିଶେଷ-ରୂପେ କହନ୍ତି । ଯଥା, ସେ ଅପେ କି ସେ ନିଜେ ।

ଏକୈକ, ପ୍ରତ୍ୟେକ, ପରସ୍ପର ଏ ମଧ୍ୟ ପ୍ରତିସଂଜ୍ଞାରେ ଗଣିତ ।

### ପ୍ରତିସଂଜ୍ଞାର ରୂପ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ସେ | ସେମାନେ |
| ଦ୍ଵିତୀୟା । | ତାହାକୁ | ସେମାନଙ୍କୁ |
| ତୃତୀୟା । | ତାହାଦ୍ଵାରା | ସେମାନଙ୍କଦ୍ଵାରା |
| ଚତୁର୍ଥୀ । | ତାହାକୁ | ସେମାନଙ୍କୁ |
| ପଞ୍ଚମୀ । | ତାହାଠାରୁ | ସେମାନଙ୍କଠାରୁ |
| ଷଷ୍ଠୀ । | ତାହାର | ସେମାନଙ୍କର |
| ସପ୍ତମୀ । | ତାହାଠାରେ | ସେମାନଙ୍କଠାରେ |

ପ୍ରତିସଂଜ୍ଞାର ସମ୍ବୋଧନ ନାହିଁ ।

ତଦ୍ରୂପେ ଏ ବହୁବଚନରେ ଏମାନେ ରୂପାନ୍ତର ହେବ, ପୁଣି ଯେ ବହୁବଚନରେ ଯେଉଂମାନେ ଅବା ଯେ ଯେ । ସମ୍ଭ୍ରାନ୍ତ ପୁରୁଷ ବା ସ୍ତ୍ରୀଙ୍କ ନାମ ବଦଳରେ ସେ ପ୍ରତ୍ୟୟ ହେଲେ ଦ୍ଵିତୀୟା ଚତୁ-ର୍ଥୀର କୁ ବିଭକ୍ତି ଙ୍କୁ ହୁଏ ଏବ. ଅନ୍ୟ ଗୁଡ଼ିଏ କାରକରେ ବିଭକ୍ତି

ପୂର୍ବରେ ଙ୍କ ଲେଖା ଯିବ ଯଥା ତାହାଙ୍କୁ, ତାହାଙ୍କଦ୍ୱାରା, ତାହାଙ୍କ-ଠାରୁ ଇତ୍ୟାଦି । ଭାଷା ବ୍ୟବହାରାନୁସାରେ ମଧ୍ୟସ୍ଥିତ ହା ଲୋପ ହୁଏ । ଯଥା, ତାଙ୍କୁ, ତାଙ୍କଦ୍ୱାରା, ତାଙ୍କଠାରୁ ଇତ୍ୟାଦି ।

ସେ ଅପ୍ରାଣିବାଚକ ହେଲେ ତୃତୀୟାରେ ତହିଁରେ, ପଞ୍ଚମୀରେ ତହିଁରୁ, ଷଷ୍ଠୀର ତହିଁର, ସପ୍ତମୀରେ ତହିଁରେ, ନତୁବା ସେଥିରେ, ସେଥିରୁ, ସେଥିରେ ଏପ୍ରକାରେ ହୋଇ ପାରେ ।

## ଅମ୍ଭେ ପ୍ରତସଂଜ୍ଞାର ରୂପ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ଅମ୍ଭେ | ଅମ୍ଭେମାନେ |
| ଦ୍ୱିତୀୟା । | ଅମ୍ଭକୁ | ଅମ୍ଭମାନଙ୍କୁ |
| ତୃତୀୟା । | ଅମ୍ଭଦ୍ୱାରା | ଅମ୍ଭମାନଙ୍କଦ୍ୱାରା |
| ଚତୁର୍ଥୀ । | ଅମ୍ଭକୁ | ଅମ୍ଭମାନଙ୍କୁ |
| ପଞ୍ଚମୀ । | ଅମ୍ଭଠାରୁ | ଅମ୍ଭମାନଙ୍କଠାରୁ |
| ଷଷ୍ଠୀ । | ଅମ୍ଭର | ଅମ୍ଭମାନଙ୍କର |
| ସପ୍ତମୀ । | ଅମ୍ଭଠାରେ | ଅମ୍ଭମାନଙ୍କଠାରେ |

ଏହି ପ୍ରକାରେ ମଧ୍ୟମ ପୁରୁଷ ତୁମ୍ଭେ ରୂପ କରିବ ।

ଇତର ଭାଷାରେ ଅମ୍ଭେ, ତୁମ୍ଭେ ଏକବଚନରେ ମୁ, ତୁ ପ୍ରୟୋଗ ହୋଇ ଭିନ୍ନ ପ୍ରକାର ରୂପ ହୁଏ । ଯଥା, ମୁ, ମତେ । ତୁ, ତତେ ଇତ୍ୟାଦି ।

## ଆପଣ ରୂପ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | ଆପଣ | ଆପଣମାନେ |
| ଦ୍ୱିତୀୟା । | ଆପଣଙ୍କୁ | ଆପଣମାନଙ୍କୁ |

| | ଏକବଚନ | ବହୁବଚନ |
|---|---|---|
| ତୃତୀୟା । | ଅପଣଙ୍କଦ୍ୱାରା | ଅପଣମାନଙ୍କଦ୍ୱାରା |
| ଚତୁର୍ଥୀ । | ଅପଣଙ୍କୁ | ଅପଣମାନଙ୍କୁ |
| ପଞ୍ଚମୀ । | ଅପଣଙ୍କଠାରୁ | ଅପଣମାନଙ୍କଠାରୁ |
| ଷଷ୍ଠୀ । | ଅପଣଙ୍କର | ଅପଣମାନଙ୍କର |
| ସପ୍ତମୀ । | ଅପଣଙ୍କଠାରେ | ଅପଣମାନଙ୍କଠାରେ |

ଅପେ ପ୍ରଢସଂଜ୍ଞାର ଏହି ପ୍ରକାର ରୂପ ହେବ । ଯଥା, ଅପେ, ଅପଣାକୁ, ଅପଣାଦ୍ୱାରା, ଅପଣାକୁ, ଅପଣାଠାରୁ, ଅପଣାର, ଅପଣାଠାରେ । ବହୁବଚନ ପ୍ରୟୋଗ ହେଲେ । ଅପେ୨, ଅପଣା୨କୁ, ଅପଣା୨ଦ୍ୱାରା, ଅପଣା୨କୁ, ଅପଣା୨ଠାରୁ, ଅପଣା୨ର, ଅପଣା୨ଠାରେ । ଯୁଷ୍ମଦ୍ ଶବ୍ଦ ଉଦ୍ଦେଶରେ ଅପଣ ଏବଂ ସାମାନ୍ୟ ଶବ୍ଦ ଉଦ୍ଦେଶରେ ଅପେ ପ୍ରୟୋଗ ହୁଏ । ଯଥା, ଅପଣ ଅର୍ଥାତ୍ ତୁମ୍ଭେ ଯାଇଥିଲ । ସେ କିମ୍ବା ତୁମ୍ଭେ ଅବା ଅମ୍ଭେ ଅପେ ଯାଇଥିଲୁଁ ।

ପ୍ରଶ୍ନବାଚକ ପ୍ରଢସଂଜ୍ଞା ଅର୍ଥାତ୍ କିଏ, କି, କଣ ଏହି ପ୍ରକାର ସାଧନ ହେବ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | କିଏ, କି, କଣ | କିଏକିଏ, କିକି |
| ଦ୍ୱିତୀୟା । | କାହାକୁ, କି | କାହା୨କୁ |
| ତୃତୀୟା । | କାହାଦ୍ୱାରା, କାହିଁରେ | କାହା୨ଦ୍ୱାରା |
| ଚତୁର୍ଥୀ । | କାହାକୁ | କାହା୨କୁ |
| ପଞ୍ଚମୀ । | କାହାଠାରୁ, କାହିଁରୁ | କାହା୨ଠାରୁ |
| ଷଷ୍ଠୀ । | କାହାର, କାହିଁର | କାହା୨ର |
| ସପ୍ତମୀ । | କାହାଠାରେ, କାହିଁରେ | କାହା୨ଠାରେ |

ବ୍ୟକ୍ତିବାଚକ ।

କେହ ପ୍ରଥସଂଜ୍ଞାର ରୂପ ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା । | କେହ | କେହକେହ |
| ଦ୍ୱିତୀୟା । | କାହାରକୁ | କାହାର୍‌ମାନଙ୍କୁ |
| ତୃତୀୟା । | କାହାରଦ୍ୱାରା | କାହାର୍‌ମାନଙ୍କଦ୍ୱାରା |
| ଚତୁର୍ଥୀ । | କାହାରକୁ | କାହାର୍‌ମାନଙ୍କୁ |
| ପଞ୍ଚମୀ । | କାହାରଠାରୁ | କାହାର୍‌ମାନଙ୍କଠାରୁ |
| ଷଷ୍ଠୀ । | କାହାର | କାହାର୍‌ମାନଙ୍କ |
| ସପ୍ତମୀ । | କାହାରଠାରେ | କାହାର୍‌ମାନଙ୍କଠାରେ |

---

ଅଷ୍ଟମ ପ୍ରକରଣ ।

ସଂଜ୍ଞା ପ୍ରଥସଂଜ୍ଞା ଉପର ବିଶେଷ ବିବେଚନା ।

୧ । ଯେ କୌଣସି କାର୍ଯ୍ୟ ସିଦ୍ଧ କରେ ବ୍ୟକ୍ତି ହେଉ ପଦାର୍ଥ ବା ହେଉ ସେ ପ୍ରଥମା ଅର୍ଥାତ୍ କର୍ତ୍ତା ପଦରେ ବୋଧ ହେବ । ଯଥା, ବାଳକ ପାଠ ପଢୁଅଛି । ପୁଷ୍ପ ବାସୁଅଛି । ଏ ସ୍ଥଳରେ ବାଳକ ପୁଷ୍ପ କର୍ତ୍ତା । କିଏ ଏହି ଶବ୍ଦ ଦ୍ୱାରା ପ୍ରଶ୍ନ କଲେ ବ୍ୟକ୍ତି-ବାଚକ କର୍ତ୍ତା ଜଣା ଯାଏ । ଯଥା, କିଏ ପାଠ ପଢୁଅଛି । ବାଳକ ଅତଏବ ବାଳକ କର୍ତ୍ତା ଇତ୍ୟାଦି । କର୍ତ୍ତା ଦ୍ରବ୍ୟବାଚକ ହେଲେ କି, କଣ ଏ ଦ୍ୱୟ ଦ୍ୱାରା ପ୍ରଶ୍ନ କଲେ କର୍ତ୍ତା ଜଣା ଯାଏ । ଯଥା, କି ବାସୁଅଛି । ପୁଷ୍ପ ଅତଏବ ପୁଷ୍ପ କର୍ତ୍ତା ।

୨ । ପରମେଶ୍ୱର ଜଗତକୁ ସର୍ଜନା କଲେ ଏ ଉଦାହରଣରେ ପରମେଶ୍ୱର କର୍ତ୍ତା ଏବଂ ଜଗତକୁ ଏହି ଦ୍ୱିତୀୟା ବା କର୍ମ ପଦ । କିମ୍ବା ଗୋବିନ୍ଦ ପୁସ୍ତକ ପଢୁଅଛି ଏହିଠାରେ ମଧ୍ୟ ପୁସ୍ତକ ଦ୍ୱିତୀୟା

ଅର୍ଥାତ୍ କର୍ମ ମାଏ ଭାଷା ରୀତ୍ୟନୁସାରେ ଦ୍ୱିତୀୟାର ବିଭକ୍ତି ଅର୍ଥାତ୍ କୁ ଏଠାରେ ଲୋପ ହୋଇଅଛି । ବ୍ୟାସ ମୁନି ମହାଭାରତ ରଚନା କରିଥିଲେ ଏହିଠାରେ କର୍ମ ପଦରେ ଦ୍ୱିତୀୟା ବିଶେଷ ଚିହ୍ନ ଯଦ୍ୟପି ନାହିଁ ତଥାପି ମହାଭାରତ ଶବ୍ଦ ଦ୍ୱିତୀୟାନ୍ତ ବୋଲି ଜାଣିବ । ଶୁଭ ଲଗ୍ନ ସ୍ଥିର କରି ଜନକ ରାଜା ରାମଚନ୍ଦ୍ରଙ୍କୁ ସୀତା ପ୍ରଦାନ କଲେ । ମାଏ ସେ ବିଭକ୍ତି କେଉଂ ସ୍ଥଳରେ ଉକ୍ତ ପୁଣି କେଉଂ ସ୍ଥଳରେ ଅନୁକ୍ତ ଏକଥା କେବଳ ବ୍ୟବହାରରୁ ଜଣା ଯାଏ ।

୩ । ବାକ୍ୟ ମଧ୍ୟରେ କର୍ମ ପ୍ରଧାନରୂପେ ଉକ୍ତ ହେଲେ କର୍ତ୍ତା ବ୍ୟକ୍ତି ହେଉ କମ୍ବା ପଦାର୍ଥ ହେଉ ସେ ତୃତୀୟା ରୂପ ଗ୍ରହଣ କରେ ।

୪ । ମାଏ ବ୍ୟକ୍ତିବାଚକ ସଂଜ୍ଞା ତୃତୀୟାରେ ରେ ବିଭକ୍ତି ଆଦେଶ ହୁଏ ନାହିଁ କେବଳ ଦ୍ରବ୍ୟବାଚକ ସଂଜ୍ଞା ତୃତୀୟାରେ ରେ ଆଦେଶ ହୁଏ । ଯେତେବେଳେ ପ୍ରକୃତ କର୍ତ୍ତା କୌଣସି ମଧ୍ୟବର୍ତ୍ତି ବ୍ୟକ୍ତି ବା ପଦାର୍ଥ ସାହାଯ୍ୟରେ ବିଶେଷ କର୍ମ ସିଦ୍ଧ କରାଏ ତେତେବେଳେ ଦ୍ୱାରା ଏହି ଶବ୍ଦ ପ୍ରୟୋଗରେ ତୃତୀୟାର ଅର୍ଥ ପ୍ରତିପନ୍ନ ହୁଏ । ଯଥା, ଇଂରେଜ ଲୋକଙ୍କ ଦ୍ୱାରା ଏହି ଦେଶର ଶାସନ ହେଉଅଛି । ପୁନର୍ବାର ମଧ୍ୟବର୍ତ୍ତି ବ୍ୟକ୍ତି ଅବା ବସ୍ତୁ ସାହାଯ୍ୟ ବିନା କର୍ତ୍ତା ସ୍ୱୟଂ କର୍ମ ସିଦ୍ଧ କଲେ କର୍ତ୍ତୃକ ଏହି ଶବ୍ଦରେ ତୃତୀୟାର ଅର୍ଥ ବୋଧ ହୁଏ । ଯଥା, ବ୍ୟାସ ମୁନି କର୍ତ୍ତୃକ ମହାଭାରତ ରଚିତ ହେଲା ।

୫ । ସଂସ୍କୃତ ଦା ଧାତୁ କମ୍ବା ଦେବା କ୍ରିୟାଯୁକ୍ତ ବାକ୍ୟରେ ଦତ୍ତ ଦ୍ରବ୍ୟ ଯାହାକୁ ପ୍ରବର୍ତ୍ତେ ତାହା ନାମ ସମ୍ପ୍ରଦାନ ଅର୍ଥାତ୍ ଚତୁର୍ଥୀ ହୁଏ । ଯଥା, ରାଜା ସନ୍ନ୍ୟାସିକୁ ଭୂମି ଦାନ ଦେଲେ ଏଠା-ରେ ସନ୍ନ୍ୟାସି ଚତୁର୍ଥୀ । ତଦ୍ରୂପେ ନେବା କମ୍ବା ନିର୍ଗତ ବିଭିନ୍ନ ଉତ୍ପନ୍ନ ଇତ୍ୟାଦି ଅର୍ଥ ବୁଝାଇବା ଅଭିପ୍ରାୟରେ ମନୁଷ୍ୟବାଚକ ସଂଜ୍ଞାରେ ଠାରୁ ଅନ୍ୟ ପ୍ରକାର ସଂଜ୍ଞାରେ ରୁ ଆଦେଶ ହୋଇ

ଅପାଦାନ ହୁଏ । ଯଥା, ପିତା ମାତାଙ୍କଠାରୁ ବିଭିନ୍ନ ହୋଇଅଛି । ମନରୁ ଅନେକ ତର୍କ ଉତ୍ପନ୍ନ ହୁଅଇ । କଦାପି କେବଳ ରୁ ସ୍ଥାନରେ ମଧ୍ୟରୁ ଲେଖା ଯାଏ ପୁଣି ଅତିମାନ୍ୟ ସ୍ଥଳରେ ଅଧିକରଣ ଅପାଦାନର ରେ, ରୁ ବଦଳରେ ନିକଟରେ, ନିକଟରୁ ଏହି ପ୍ରକାର ଆଦେଶ ହୁଏ ।

୬ । କେବଳ ପୁସ୍ତକ କହିଲେ ସବୁ ପୁସ୍ତକକୁ ବୁଝାଇବ ମାତ୍ର ଦେବଦତ୍ତର ପୁସ୍ତକ ଏହି କଥା ପ୍ରୟୋଗରେ ବିଶେଷ ବ୍ୟକ୍ତି ଅର୍ଥାତ୍ ଦେବଦତ୍ତ ସମ୍ବନ୍ଧୀୟ ଯେଉଂ ପୁସ୍ତକ ତାହା ବୋଧ ହୁଏ ଅତଏବ ଷଷ୍ଠୀକୁ ସମ୍ବନ୍ଧ ବୋଲି ଯାଏ । ଭାଷା ବ୍ୟବହାରାନୁସାରେ ଯାହାର ବସ୍ତୁ, ସେ ବସ୍ତୁର ନାମ, ଏ ଦୁହେଁ ବାକ୍ୟ ମଧ୍ୟରେ ପରସ୍ପର ଥିଲେ ଅର୍ଥାତ୍ ଦୁହିଙ୍କ ମଧ୍ୟରେ ଅନ୍ୟ ଶବ୍ଦ ନ ଥିଲେ ଷଷ୍ଠୀର ରେଫ ଲୋପ ହୁଏ । ଯଥା, ରାଜାଙ୍କ ସୈନ୍ୟ । ତାହା ପୁସ୍ତକ । ଏବଂ ସମୀପରେ ଷଷ୍ଠୀର ରେଫ ସର୍ବଦା ଲୋପ ହୁଏ ।

୭ । ଭିତରେ ଏବଂ ଉପରେ ଏ ଦୁଇ ଭାଷା ପଦର ଅର୍ଥ ଅଧିକରଣ ବା ସପ୍ତମୀ ଅଭିପ୍ରେତ ହୁଏ । ଯଥା, ଦେବଦତ୍ତ ଘରେ ଅଛି । ଅର୍ଥାତ୍ ଘର ମଧ୍ୟରେ । କିମ୍ବା ରାଜା ସିଂହାସନରେ ବସିଲେ ଅର୍ଥାତ୍ ସିଂହାସନ ଉପରେ । ପ୍ରାଣିବାଚକ ଶବ୍ଦର ଅଧିକରଣଠାରେ ଏହି ବିଭକ୍ତି ଦ୍ୱାରା ସାମାନ୍ୟରୂପେ ବୋଧ ହୁଏ ।

୮ । ସଂଜ୍ଞା ପ୍ରତିସଂଜ୍ଞା ଉପର ବିଶେଷ ବିବେଚନା ଏଠାରେ ଅଳ୍ପ ମାତ୍ର ହୋଇଅଛି କିନ୍ତୁ ବାକ୍ୟ ରଚନାରେ ଭିନ୍ନ ୨ ପ୍ରକାର କ୍ରିୟା କେତେକ ଅବ୍ୟୟ ଶବ୍ଦ ସଂଯୋଗରେ କର୍ତ୍ତା, କର୍ମ, କରଣ ଇତ୍ୟାଦି କାରକ ବ୍ୟାକରଣ ବିଧି ଭାଷା ବ୍ୟବହାରାଧୀନ ବିଶେଷ ୨ ପ୍ରକାରେ ପ୍ରୟୋଗ ଯୋଗ୍ୟ ତାହା ଏହି ସ୍ଥଳରେ ଲେଖିଲେ ବିଳମ୍ବ ହୁଅନ୍ତା ମାତ୍ର ତୃତୀୟ ଅଧ୍ୟାୟ ଅନ୍ୱୟ ମିଳନ ପ୍ରକରଣ ଦେଖିଲେ ଜଣା ଯିବ ।

## ନବମ ପ୍ରକରଣ ।

### ଲିଙ୍ଗଭେଦ ।

୧ । ସଂଜ୍ଞାର ତିନ ଲିଙ୍ଗ ଅର୍ଥାତ୍ ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଏବ କ୍ଲୀବଲିଙ୍ଗ । ପୁରୁଷବୋଧକ ସକଳ ପ୍ରାଣିବାଚକ ଶବ୍ଦ ଯଥା, ରାଜା, ପୁତ୍ର, ଗୁରୁ ଇତ୍ୟାଦି ପୁଂଲିଙ୍ଗ । ଏବ ସ୍ତ୍ରୀତ୍ୱବୋଧକ, ସେହି ପ୍ରକାର ଶବ୍ଦ । ଯଥା, ରାଣୀ, କନ୍ୟା, ଭାର୍ଯା ଇତ୍ୟାଦି ସ୍ତ୍ରୀଲିଙ୍ଗ । ତଦ୍ଭିନ୍ନ ଅପର ଯାବତ୍ ଅଜୀବ ବସ୍ତୁ ଅର୍ଥାତ୍ ଜଳ, ଦଧି, ମଣ୍ଡପ ଇତ୍ୟାଦି କ୍ଲୀବଲିଙ୍ଗ ଜାଣିବ ।

୨ । କେତେକ ବିଶେଷ ସ୍ଥଳରେ ଏକ ଜାତୀୟ ମନୁଷ୍ୟ ବା ପଶୁ ବାଚକସଂଜ୍ଞା ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ପୃଥକ୍ ଶବ୍ଦ ଦ୍ୱାରା ବୋଧ ହୁଏ । ଯଥା, ମାତା, ପିତା, ରାଜା, ରାଣୀ, ପୁତ୍ର, କନ୍ୟା, ଘୋଡ଼ୁଆ, ମହିଷୀ, ଷଣ୍ଢ, ଗାଈ ଇତ୍ୟାଦି । ପୁନର୍ବାର କେତେକ ପଶୁବାଚକ ସଂଜ୍ଞା ପୁଂ, ସ୍ତ୍ରୀ ଉଭୟ ଲିଙ୍ଗ ବୋଧକ ହେବାରୁ ତାହାର ବିଶେଷ ଲିଙ୍ଗ ଜ୍ଞାପନ ନିମନ୍ତେ ଅଣ୍ଡିରା, ମାଈ ଏହି ଲିଙ୍ଗ ବୋଧକ ଶବ୍ଦ ସଂଯୁକ୍ତ କରିବାର ଆବଶ୍ୟକ ହୁଏ । ଯଥା, କୋକିଳ ଏ ଶବ୍ଦ ବିଶେଷ ନୋହିଲେ ଦୁଇ ଲିଙ୍ଗକୁ ବୁଝାଏ । ଅତଏବ ଅଣ୍ଡିରା କୋକିଳ, ମାଈ କୋକିଳ ଅଥବା ସ୍ତ୍ରୀ କୋକିଳ ଏରୂପ ବିଶେଷ କରା ଯାଏ ।

୩ । ମାତ୍ର ପୁରୁଷତ୍ୱବୋଧକ ଅନେକ ଶବ୍ଦାନ୍ତ ବର୍ଣ୍ଣ ମତାନ୍ତର କରିବା ଦ୍ୱାରା ସେ ସେ ପୁଂଲିଙ୍ଗ ଶବ୍ଦର ସ୍ତ୍ରୀତ୍ୱ ବୋଧ ହୁଏ ଅତଏବ ସେ ମତାନ୍ତର କେଉଂ କେଉଂ ସ୍ଥଳରେ କି ପ୍ରକାରେ କର୍ତ୍ତବ୍ୟ ଇହା ବିବେଚନା କରିବାର ଅବଶ୍ୟକ ଅଟଇ ।

୪ । ମନୁଷ୍ୟଙ୍କର ଭିନ୍ନ ଭିନ୍ନ ଜାତି ଅବା ବ୍ୟବସାୟବାଚକ ପୁଂଲିଙ୍ଗ ଶବ୍ଦ ଶେଷରେ ଅଣୀ, ଉଣୀ, ଣୀ, ଏ ପ୍ରତ୍ୟୟମାନ ଲେଖିବା ଦ୍ୱାରା

ସେ୬ ପୁଂଲିଙ୍ଗ ଶବ୍ଦର ସ୍ତ୍ରୀତ୍ୱ ବୋଧ ହୁଏ ମାତ୍ର ଏଥିନ ବିଭକ୍ତି ମଧ୍ୟରୁ କଏ କେଉଂଠାରେ ପ୍ରୟୋଗ ହେବ ଏହି ବିଷୟ ଅନିଶ୍ଚିତ ଯଥା, ବ୍ରାହ୍ମଣ, ବ୍ରାହ୍ମଣୀ । କୁମ୍ଭାର କୁମ୍ଭାରଣୀ । ବଣିଆ, ବଣିଆଣୀ । ଚଣ୍ଡାଳ, ଚଣ୍ଡାଳୁଣୀ ।

୫ । ସେହିରୂପେ ମନୁଷ୍ୟ ଜାତି କିମ୍ବା ବ୍ୟବସାୟବାଚକ ନ ହୋଇ କେତେକ ଅକାରାନ୍ତ ଶବ୍ଦର ସ୍ତ୍ରୀଲିଙ୍ଗରେ ଉଣୀ, ଆଣୀ ଆଦେଶ ହୁଅନ୍ତି । ଯଥା, ଠାକୁର, ଠାକୁରାଣୀ । କାଳ, କାଳୁଣୀ । ବାଘ, ବାଘୁଣୀ ।

୬ । ଅକାରାନ୍ତ ପ୍ରାୟ ସବୁ ପୁଂଲିଙ୍ଗ ସଂଜ୍ଞା ସ୍ତ୍ରୀଲିଙ୍ଗରେ ଦୀର୍ଘ ଇକାର ଗ୍ରହଣ କରନ୍ତି । ଯଦ୍ୟପି ପୂର୍ବ ଲେଖିତ ମନୁଷ୍ୟ ଜାତି-ବାଚକ ହୋଇ ନ ଥିବେ । ଯଥା, କୁକୁଡା କୁକୁଡୀ । ଖଜା, ଖଜୀ । ଘୋଡା, ଘୋଡୀ ଇତ୍ୟାଦି ।

୭ । ଏହିରୂପେ କେବଳ ଭାଷାରେ ପୁଂଲିଙ୍ଗ ଶବ୍ଦର ସ୍ତ୍ରୀଲିଙ୍ଗ ପ୍ରାପ୍ତ ହୁଏ ମାତ୍ର ସଂସ୍କୃତ ପୁଂଲିଙ୍ଗ ଶବ୍ଦକୁ ପ୍ରତି ଏ ନିୟମ ପ୍ରବର୍ତ୍ତେ ନାହିଁ ତଥାପି ଅନେକାନେକ ସଂସ୍କୃତ ଶବ୍ଦ ସାଧୁ ଭାଷାରେ ମିଳେ, ଏହେତୁରୁ ତାହାର କି ପ୍ରକାର ଲିଙ୍ଗ ଭେଦ ହୁଏ ଏହି ବିଷୟ ଲେଖିବା କର୍ତ୍ତବ୍ୟ ।

୮ । ଆ ଇ ଉ ଏହି ତିନ ସ୍ୱରାନ୍ତ ପ୍ରାୟ ସବୁ ସଂସ୍କୃତ ଶବ୍ଦ ସ୍ତ୍ରୀଲିଙ୍ଗ ଜାଣିବ । ଯଥା, ଇଚ୍ଛା । ଲତା । ନଦୀ । ଭୂ । ଇତ୍ୟାଦି । କେତେକ ଶବ୍ଦ ଏଥିର ବିପରୀତ ତଥାପି ଏ ପ୍ରାୟ ସାଧାରଣ ନିୟମ ଅଟେ ।

୯ । ଅକାରାନ୍ତ ପୁଂଲିଙ୍ଗ ସଂଜ୍ଞା ଗୁଣାତ୍ମକ ବିଶେଷଣ ଶବ୍ଦ ସାଧାରଣରୂପେ ଆକାରାନ୍ତ ହୋଇ ସ୍ତ୍ରୀଲିଙ୍ଗ ହୁଅନ୍ତି । ଯଥା, ଅଜ, ଅଜା । ବାଳ, ବାଳା । ଶୂଦ୍ର, ଶୂଦ୍ରା । ଅଧମ, ଅଧମା । ଉତ୍ତମ, ଉତ୍ତମା । ପ୍ରବୀଣ, ପ୍ରବୀଣା । ବୃଦ୍ଧ, ବୃଦ୍ଧା । ଦୀର୍ଘ ଦୀର୍ଘା । କ୍ଷୀଣ,

କ୍ଷୀଣା । ପୀନ, ପୀନା ଇତ୍ୟାଦି । ତଥାପି କେତେକ ସ୍ଥଳରେ ଈକାର ଅଦେଶ ହୁଏ ।

୧୦ । ଅନେକ ଶବ୍ଦର ସ୍ତ୍ରୀତ୍ୱ ବୋଧାର୍ଥେ ଈପ୍ ଅର୍ଥାତ୍ ଈକାର ପ୍ରୟୋଗ ହୁଏ । ଯଥା, ଶ୍ରୀମତ୍, ଶ୍ରୀମତୀ । ଭଗବତ୍, ଭଗବତୀ । ନଦ, ନଦୀ, । ଦେବ, ଦେବୀ । ଗୈର, ଗୈରୀ । ଗୌର, ଗୌରୀ ।

୧୧ । ଯଦ୍ୟପି ପୁଂଲିଙ୍ଗ ଶବ୍ଦ ଅ ଆ ଇ ଈ କମ୍ବା ଯୁକାରାନ୍ତ ହୋଇଥିବ ତେବେ ଈପ୍ ଗ୍ରହଣ ପୂର୍ବରେ ସେ ବର୍ଣ୍ଣ ସବୁ ଲୋପ ହୁଏ । ଏବଂ ଯେବେ ପୁଂଲିଙ୍ଗ ଶବ୍ଦର ଶେଷ ଅକ୍ଷର ହଲନ୍ତ ନକାର ହୋଇଥାଏ ତେବେ ହଲନ୍ତ ନକାର ପରେ ପ୍ରତ୍ୟୟ ହୋଇ ସ୍ତ୍ରୀଲିଙ୍ଗ ହୁଏ । ଯଥା, କାରନ୍, କାରଣୀ । ନାଶିନ୍, ନାଶିନୀ । ଗର୍ବିନ୍, ଗର୍ବିଣୀ । ଗର୍ଭିନ୍, ଗର୍ଭିଣୀ । କାମିନ୍, କାମିନୀ । ଗାମିନ୍, ଗାମିନୀ ଇତ୍ୟାଦି ।

୧୨ । ମନୁଷ୍ୟ ଜାତିବାଚକ ଏବଂ ପଶୁଜାତିବାଚକ ଯେତେ ଶବ୍ଦ ଅକାରାନ୍ତ ହୋଇ ଥାନ୍ତି ସେ ଅକାର ପୂର୍ବରେ ଯକାର ନ ଥିଲେ ଏତାଦୃଶ ପୁଂଲିଙ୍ଗ ଶବ୍ଦର ସ୍ତ୍ରୀତ୍ୱ ଜ୍ଞାନ ଈକାର ଦ୍ୱାରା ପ୍ରତିପନ୍ନ ହୁଏ । ଯଥା, ମୃଗ, ମୃଗୀ । ବ୍ୟାଘ୍ର, ବ୍ୟାଘ୍ରୀ । ରାଜହଂସ, ରାଜହଂସୀ । ସିଂହ, ସିଂହୀ । ଦେବ, ଦେବୀ । କନ୍ନର, କନ୍ନରୀ । ବ୍ରାହ୍ମଣ; ବ୍ରାହ୍ମଣୀ । ବାନର, ବାନରୀ । ମହିଷ, ମହିଷୀ । ମେଷ, ମେଷୀ ।

୧୩ । ମାତ୍ର ଯଦ୍ୟପି ପୁଂଲିଙ୍ଗ ଶବ୍ଦର ଅନ୍ତସ୍ଥିତ ଅକାର ପୂର୍ବରେ ଯକାର ଥାଏ ତେବେ ସ୍ତ୍ରୀଲିଙ୍ଗରେ ଆକାର ଅଦେଶ ହୁଏ । ଯଥା, କ୍ଷତ୍ରିୟ, କ୍ଷତ୍ରିୟା । ବୈଶ୍ୟ, ବୈଶ୍ୟା ଇତ୍ୟାଦି । ତଥାପି ଦୁଇ ଏକ ଶବ୍ଦର ପୂର୍ବରେ ଯକାର ଥିଲେହେଁ ଏନିୟମ ଅନ୍ୟଥା ହୁଏ । ଯଥା, ମନୁଷ୍ୟ, ମନୁଷୀ । ମତ୍ସ୍ୟ, ମତ୍ସୀ ।

୧୪ । ଅକ ଏହି ଶବ୍ଦାନ୍ତ ପୁଂଲିଙ୍ଗ ସଂଜ୍ଞା ସ୍ତ୍ରୀଲିଙ୍ଗରେ ଅ ବଦଳରେ ଇକାର ଆଦେଶ ହେବ । ଯଥା, ଗୋପାଳକ, ଗୋପାଳିକା । କାରକ, କାରିକା । ପାଠକ, ପାଠିକା । ବାଳକ, ବାଳିକା । ନାୟକ, ନାୟିକା । ଗାୟକ, ଗାୟିକା ଇତ୍ୟାଦି । ମାତ୍ର ଦୁଇ ଏକ ସ୍ଥଳରେ ଏନିୟମ ମଧ୍ୟ ଅନ୍ୟଥା ହୁଏ । ଯଥା, ଚଟକ, ଚଟକା ଇତ୍ୟାଦି ।

୧୫ । ଋକାରାନ୍ତ ଶବ୍ଦ ସ୍ତ୍ରୀତ୍ୱ ବୁଝାଇବାବେଳେ ଋ ଲୋପ ହୋଇ ଈ ହୁଏ ଯଥା, କର୍ତ୍ତୃ, କର୍ତ୍ତ୍ରୀ । ଦାତୃ, ଦାତ୍ରୀ । ଧାତୃ, ଧାତ୍ରୀ । ହନ୍ତୃ, ହନ୍ତ୍ରୀ ଇତ୍ୟାଦି ।

୧୬ । ଇକାରାନ୍ତ ପୁଂଲିଙ୍ଗ ମିଶ୍ରିତ ଶବ୍ଦ ସ୍ତ୍ରୀଲିଙ୍ଗରେ ଈକାର ଯୁକ୍ତ ହୋଇ ପ୍ରୟୋଗ ହୁଏ । ଯଥା, ଅଧିକାରୀ, ଅଧିକାରିଣୀ । ମିଥ୍ୟାବାଦୀ, ମିଥ୍ୟାବାଦିନୀ ।

---

## ଦଶମ ପ୍ରକରଣ ।

### ବିଶେଷଣ । ପ୍ରଥମେ ଗୁଣାତ୍ମକ ବିଶେଷଣ ।

ଯେଉଁ ଶବ୍ଦ ସଂଜ୍ଞା ଆଗେ ପ୍ରୟୋଗ ହୋଇ ସେ ସଂଜ୍ଞାର ଗୁଣ ସ୍ୱଭାବ ଇତ୍ୟାଦି ବର୍ଣ୍ଣନା କରେ ତାକୁ ଗୁଣାତ୍ମକ କି ଗୁଣବାଚକ ବିଶେଷଣ ବୋଲି । ଯଥା, ଉତ୍ତମ ପୁରୁଷ । ସୁନ୍ଦରୀ ସ୍ତ୍ରୀ । ବୃହତ୍ ଘର । ଏସ୍ଥଳମାନଙ୍କରେ ସଂଜ୍ଞାର ଗୁଣ ଅର୍ଥାତ୍ ଉତ୍ତମତା, ସୌନ୍ଦର୍ଯ୍ୟ ଏବଂ ବୃହତ୍ ଗୁଣାତ୍ମକ ବିଶେଷଣ ଦ୍ୱାରା ବୋଧ କରା ଯାଏ । ଅତଏବ ଏତାଦୃଶ ଶବ୍ଦ ଗୁଣାତ୍ମକ ବିଶେଷଣ ବୋଲି ଜାଣିବ ।

ଗୁଣାତ୍ମକ ବିଶେଷଣର ରୂପ କିମ୍ବା ବଚନ ଅଥଚ ଭାଷା ଗୁଣାତ୍ମକ ଶବ୍ଦ ଯାହା ସଂସ୍କୃତରେ ମିଳେ ନାହିଁ ଏପ୍ରକାର ଗୁଣାତ୍ମକ ବିଶେଷଣର ସାଧାରଣରୂପେ ଲିଙ୍ଗ ଚିହ୍ନ ନାହିଁ, ତଥାପି ସଂସ୍କୃତ

ଗୁଣାତ୍ମକ ଶବ୍ଦ ଯାହା ଭାଷାରେ ବାହୁଲ୍ୟରୂପେ ବ୍ୟବହାର ହୁଅନ୍ତି ସେ ସକଳ ଶବ୍ଦର ପୁଂଲିଙ୍ଗଠାରୁ ସ୍ତ୍ରୀଲିଙ୍ଗକୁ ଯଥୋପଯୁକ୍ତରୂପେ ନିର୍ଣ୍ଣୟ କରିବାକୁ ଅବଶ୍ୟକ ଅଛି ।

ଗୁଣାତ୍ମକ ଶବ୍ଦର ରୂପ ନାହିଁ ଇହା ପୂର୍ବରେ ଲେଖା ଅଛି ମାତ୍ର ଯେଉଁ ବ୍ୟକ୍ତି ବା ପଦାର୍ଥର ଗୁଣ ଇତ୍ୟାଦି ସେ ଶବ୍ଦ କହେ, ସେ ଯେବେ ଉକ୍ତ ନ ହୁଏ ତେବେ ଗୁଣାତ୍ମକ ଶବ୍ଦ ସଂଜ୍ଞା ପ୍ରାପ୍ତ ରୂପା-ନ୍ତର ହେବା ଯୋଗ୍ୟ ହୋଇ ବାସ୍ତବ ସଂଜ୍ଞା ତୁଲ୍ୟ ଜ୍ଞାନ ହେବ । ଯଥା, ସୁନ୍ଦରୀ ସ୍ତ୍ରୀର ଅଳଙ୍କାର । ଏଠାରେ ବିଶେଷ୍ୟ ଅର୍ଥାତ୍ ସ୍ତ୍ରୀ ବ୍ୟକ୍ତ ହୋଇଅଛି । ମାତ୍ର ସୁନ୍ଦରୀର ଅଳଙ୍କାର ଏଠାରେ ଅନୁକ୍ତ କେବଳ ଅଭିପ୍ରେତ ହୁଏ ଅତଏବ ସୁନ୍ଦରୀ ସଂଜ୍ଞା ବିଶେଷ୍ୟ ସମାନ ରୂପ ହୁଏ । ଯଥା, ସୁନ୍ଦରୀ । ସୁନ୍ଦରୀକୁ । ସୁନ୍ଦରୀରେ ଇତ୍ୟାଦି । ଏତାଦୃଶ ସ୍ଥଳରେ ଗୁଣାତ୍ମକ ବିଶେଷଣ ଶବ୍ଦ ବିଶେଷ୍ୟ ପ୍ରାପ୍ତ ବୋଧ ହୋଇ ବିଶେଷ୍ୟ ପରି ବଚନ ଲିଙ୍ଗ ଇତ୍ୟାଦିର ବିଶେଷ ଚିହ୍ନ ଗ୍ରହଣ କରିବ ।

ଅନେକ ଗୁଣାତ୍ମକ ଶବ୍ଦ ବିଶେଷ ଅବ୍ୟୟ ଶବ୍ଦ ଯୋଗରେ ସଂଜ୍ଞା ବିଶେଷ୍ୟ ଶବ୍ଦରୁ ନିଷ୍ପନ୍ନ ବା ପ୍ରାପ୍ତ ହୁଅନ୍ତି । ତହିଁର ନିୟମ ତଦ୍ଧିତ ବୋଲାଏ ଏବଂ ଏ ପୁସ୍ତକର ଚତୁର୍ଥ ଭାଗରେ ମିଳିବ ।

ଯଦ୍ୟପି ସଂଜ୍ଞା ପୁଂଲିଙ୍ଗ ତେବେ ତାହାର ଗୁଣାତ୍ମକ ଶବ୍ଦ ମଧ୍ୟ ପୁଂଲିଙ୍ଗ ହେବ ଏବଂ ସଂଜ୍ଞା ଯଦ୍ୟପି ସ୍ତ୍ରୀଲିଙ୍ଗ ତେବେ ତାହା ଗୁଣା-ତ୍ମକ ଶବ୍ଦ ମଧ୍ୟ ସ୍ତ୍ରୀଲିଙ୍ଗ ହେବ । ଯଥା, ଯୁବା ପୁରୁଷ । ଯୁବତୀ ସ୍ତ୍ରୀ । ଧନବାନ୍ ରାଜା । ଧନବତୀ ରାଣୀ । ଅନାଥ ପୁତ୍ର । ଅନାଥା କନ୍ୟା । ଦୁର୍ଦ୍ଦାନ୍ତ ବ୍ୟାଘ୍ର । ଦୁର୍ଦ୍ଦାନ୍ତା ବ୍ୟାଘ୍ରୀ ଇତ୍ୟାଦି ।

ଲିଙ୍ଗର ବିଶେଷ ନ କରି ଜାତିବାଚକ କୌଣସି ସଂଜ୍ଞାର ପ୍ରୟୋଗ କଲେ ସେ ସାଧାରଣ ଲିଙ୍ଗ ଜ୍ଞାନ ହୁଏ ଅର୍ଥାତ୍ ଯାହା ନୁହେ ସ୍ତ୍ରୀଲିଙ୍ଗ ନୁହେ ପୁଂଲିଙ୍ଗ । ଯଥା, ଗୋରୁ, ପକ୍ଷୀ, ଜନ୍ତୁ, ଇତ୍ୟାଦି ।

ପ୍ରକାର ଲିଙ୍ଗ ଅନିଶ୍ଚିତ ସ୍ଥଳରେ ଗୁଣାତ୍ମକ ବିଶେଷଣମଧ୍ୟ ସାଧାରଣ ଲିଙ୍ଗ ହେବ* ।

ଭାଷାରେ ପୁଂଲିଙ୍ଗ କ୍ଳୀବଲିଙ୍ଗ ଦୁହେଁ ସମାନ । ଯଥା, ଉତ୍ତମ ପୁରୁଷ, ଉତ୍ତମ ପୁସ୍ତକ ଇତ୍ୟାଦି ।

ଗୁଣାତ୍ମକ ବିଶେଷଣର ଏହି ଏକ ବିଶେଷ ଲକ୍ଷଣ ଜଣା ଯାଏ କି ସେ ତର, ତମ କିମ୍ବା ଭାଷାରେ ଅତି, ଅତ୍ୟନ୍ତ ଏହି ଶବ୍ଦ ଯୋଗରେ ଦୁଇ ବ୍ୟକ୍ତି ବା ପଦାର୍ଥ କିମ୍ବା ଅନେକ ବ୍ୟକ୍ତି ବା ପଦାର୍ଥର ପରସ୍ପର ଗୁଣ ଇତ୍ୟାଦିର ନ୍ୟୂନାଧିକ୍ୟ ଜ୍ଞାପନ କରାଏ । ଯଥା, ପ୍ରିୟ, ପ୍ରିୟତର, ପ୍ରିୟତମ । ପ୍ରିୟ କହିଲେ ଅର୍ଥ ସାଧାରଣ ହୁଏ'। ପ୍ରିୟତର କହିଲେ ପ୍ରିୟରୁ ଅଧିକ ପ୍ରିୟ ଯେ, ଏହି ଅଭିପ୍ରାୟ ବୋଧ ହେବ । ଯଥା, କନ୍ୟାଠାରୁ ପୁତ୍ର ପ୍ରିୟତର । ମାତ୍ର ପ୍ରିୟତମ ପ୍ରୟୋଗ କଲେ ସମସ୍ତଙ୍କଠାରୁ ଅଧିକ ପ୍ରିୟ ଯେ, ତାକୁ ବୁଝାଇବ । ଯଥା, ଏକ ଗୁଣି ପୁତ୍ର ଶତ ମୂର୍ଖ ପୁତ୍ରଠାରୁ ପ୍ରିୟତମ । ତଦ୍ରୂପେ ଶୁକ୍ଳ, ଶୁକ୍ଳତର, ଶୁକ୍ଳତମ । କୃଷ୍ଣ, କୃଷ୍ଣତର, କୃଷ୍ଣତମ । ଗୁରୁ, ଗୁରୁତର, ଗୁରୁତମ । ଯୁବ, ଯୁବତର, ଯୁବତମ । ମାତ୍ର ପ୍ରିୟତର, ପ୍ରିୟତମ ଏ ପୁଂଲିଙ୍ଗବାଚକ, ତାହାର ସ୍ତ୍ରୀଲିଙ୍ଗ ପ୍ରିୟା, ପ୍ରିୟତରା, ପ୍ରିୟତମା ଇତ୍ୟାଦି ।

---

* ଯଦ୍ୟପି ଭାଷାରେ ଗୁଣାତ୍ମକ ଶବ୍ଦାନ୍ତେ ସ୍ତ୍ରୀଲିଙ୍ଗର ବିଶେଷ ଚିହ୍ନ ଲେଖିବାର ରୀତି ସମ୍ପୂର୍ଣ୍ଣରୂପେ ଚଳେ ନାହିଁ ତଥାପି ଏ କେବଳ ଦୁଃଖର ବିଷୟ ଅଟଇ ଅତଏବ ଏ ବ୍ୟାକରଣ ରଚନାକାରର ପରାମର୍ଶ ଏହି କି ସବୁ ସ୍ଥଳରେ ସ୍ତ୍ରୀଲିଙ୍ଗ ସଂଜ୍ଞା ସଙ୍ଗେ ସ୍ତ୍ରୀଲିଙ୍ଗ ଗୁଣାତ୍ମକ ବିଶେଷଣ ଆଦେଶ କରା ଯାଉ । ଉପରେ ଅଳ୍ପ ମାତ୍ର ଉଦାହରଣ ଲେଖା ଯାଇଅଛି । କିନ୍ତୁ ସଂଜ୍ଞା ଲିଙ୍ଗ ଭେଦର ନିୟମ ପ୍ରାୟ ଗୁଣାତ୍ମକ ଶବ୍ଦରେ ପ୍ରବର୍ତ୍ତେ ଅତଏବ ତାହା ଦେଖିଲେ ଏ ବିଷୟ ଉତ୍ତମରୂପେ ଜଣା ଯାଇ ପାରିବ ।

ମାଏ ଭାଷାରେ ଏହିରୂପେ ହୁଏ । ଯଥା, ପ୍ରିୟ, ଅଧିକ ପ୍ରିୟ, ଅତ୍ୟନ୍ତ ପ୍ରିୟ । କିମ୍ବା ଅଦ୍ୟ ସଂଜ୍ଞାରେ ପଞ୍ଚମୀର ଠାରୁ ବିଭକ୍ତି ଯୋଗ କରି ଅଧିକ ସମସ୍ତଙ୍କଠାରୁ ଅଧିକ ଏହି ପ୍ରକାର ହେବ । ଯଥା, ଦେବଦତ୍ତଠାରୁ ଜଗନ୍ନାଥ ଅଧିକ ଚତୁର, କିମ୍ବା ଜଗନ୍ନାଥ ସମସ୍ତଙ୍କଠାରୁ ଅଧିକ ଚତୁର ।

ପୁନଶ୍ଚ ସଂସ୍କୃତ ଶବ୍ଦରେ କୌଣସି ୨ ସ୍ଥଳରେ ଇୟସ, ଇଷ୍ଠ ଏ ଶବ୍ଦଦ୍ୱୟ ସଂଯୁକ୍ତ କରିବା ଦ୍ୱାରା ନ୍ୟୂନାଧିକ୍ୟ ଅର୍ଥ ଜଣା ଯାଏ । ଯଥା, ପ୍ରିୟ, ପ୍ରେୟସ୍, ପ୍ରେଷ୍ଠ । କନ, କନୀୟସ୍, କନିଷ୍ଠ । ଶ୍ର, ଶ୍ରେୟସ୍, ଶ୍ରେଷ୍ଠ । ଏବଂ ସ୍ତ୍ରୀଲିଙ୍ଗରେ ପ୍ରିୟା, ପ୍ରେୟସୀ, ପ୍ରେଷ୍ଠା ।

ପୁନଶ୍ଚ ସଂଖ୍ୟାବାଚକ ଶବ୍ଦ ଗୁଣାତ୍ମକ ବିଶେଷଣ ମଧ୍ୟରେ ଗଣିତ ହୁଅନ୍ତି । ସେ ଦୁଇ ପ୍ରକାର, ପ୍ରଥମେ ସଂଖ୍ୟାନୁସାର ଯଥା,

ଏକ (୧), ଦ୍ୱି (୨), ତ୍ରି (୩), ଚତୁର (୪), ପଞ୍ଚ (୫), ଷଟ୍ (୬), ସପ୍ତ (୭), ଅଷ୍ଟ (୮), ନବ (୯), ଦଶ (୧୦), ଏକାଦଶ (୧୧), ଦ୍ୱାଦଶ (୧୨), ତ୍ରୟୋଦଶ (୧୩), ଚତୁର୍ଦ୍ଦଶ (୧୪), ପଞ୍ଚଦଶ (୧୫), ଷୋଡଶ (୧୬), ସପ୍ତଦଶ (୧୭), ଅଷ୍ଟାଦଶ (୧୮), ଊନବିଂଶତି (୧୯), ବିଂଶତି (୨୦), ତ୍ରିଂଶତ୍ (୩୦), ଚତ୍ୱାରିଂଶତ୍ (୪୦), ପଞ୍ଚାଶତ୍ (୫୦), ଷଷ୍ଟି ଅର୍ଥାତ୍ ଷାଠିଏ (୬୦), ସପ୍ତତି ଅର୍ଥାତ୍ ସତୁରି (୭୦), ଅଶୀତି ଅର୍ଥାତ୍ ଅଶୀ (୮୦), ନବତି ଅର୍ଥାତ୍ ନବେ (୯୦), ଶତ ଅର୍ଥାତ୍ ଶଏ (୧୦୦), ସହସ୍ର (୧୦୦୦), ଅୟୁତ (୧୦,୦୦୦), ଲକ୍ଷ (୧୦୦,୦୦୦), ନିୟୁତ (୧୦୦୦,୦୦୦), କୋଟି (୧୦,୦୦୦,୦୦୦), ଅର୍ବୁଦ (୧୦୦,୦୦୦,୦୦୦), ମହା-ଅର୍ବୁଦ (୧୦୦୦,୦୦୦,୦୦୦), ଏବଂ ତତ୍ପର ଏକ ୨ ଶୂନ୍ୟ ବୃଦ୍ଧିରେ ପଦ୍ମ, ମହାପଦ୍ମ, ଖର୍ବ, ମହାଖର୍ବ, ଶଙ୍ଖ, ମହାଶଙ୍ଖ ଇତ୍ୟାଦି ।

ଅର୍ଥାତ୍ ଏକ କହିଲେ ସଂଖ୍ୟାରେ ଗୋଟିଏ । ଦଶ କହିଲେ ସଂଖ୍ୟାରେ ଦଶ ଗୋଟି ।

ଦ୍ୱିତୀୟ୍ରେ କ୍ରମାନୁସାର ଯଥା,

ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ, ନବମ, ଦଶମ ଇତ୍ୟାଦି ।

ଅର୍ଥାତ ପ୍ରଥମ କହିଲେ କ୍ରମିକ ଗଣନାରେ ଆଦ୍ୟ ଯେ ସେ ପ୍ରଥମ । ଦ୍ୱିତୀୟ କହିଲେ କ୍ରମିକ ଗଣନାରେ ପ୍ରଥମ ବାଦ ଦ୍ୱିତୀୟ । ଦ୍ୱିତୀୟ ବାଦ ତୃତୀୟ ଇତ୍ୟାଦି ।

---

## ଏକାଦଶ ପ୍ରକରଣ ।

### ଦ୍ୱିତୀୟରେ କ୍ରିୟାତ୍ମକ ବିଶେଷଣ ।

ଯେଉଂ ଶବ୍ଦ କର୍ତ୍ତ ପଦର ସନ୍ନବର୍ତ୍ତୀ ହୋଇ ସେ କର୍ତ୍ତ ପଦର କ୍ରିୟାକୁ କହେ ଏବଂ ବାକ୍ୟ ଅର୍ଥ ସମାପ୍ତ କରେ ତାକୁ କ୍ରିୟାତ୍ମକ ଅବା କ୍ରିୟାବାଚକ ବିଶେଷଣ ବୋଲି ଯାଏ । ଯଥା, ବାଳକ ପଢୁ-ଅଛି । ପକ୍ଷୀ ଉଡୁଅଛି । ବାଳକର କ୍ରିୟା କି? ପଢିବାର । ଏବଂ ପକ୍ଷିର କ୍ରିୟା ଉଡିବାର, ଅତଏବ ପଢୁଅଛି, ଉଡୁଅଛି ଏ ଦ୍ୱୟ କ୍ରିୟାତ୍ମକ ବିଶେଷଣ ।

କ୍ରିୟାତ୍ମକ ବିଶେଷଣ ତିନି ପ୍ରକାର ଅର୍ଥାତ ସକର୍ମକ, ଅକର୍ମକ ଏବଂ ନୈମିତ୍ତିକ ଅଥବା ପ୍ରେରଣାର୍ଥ ।

ପ୍ରଥମେ ସକର୍ମକ କ୍ରିୟା । ଯେଉଂ କ୍ରିୟାପଦର କର୍ମ କର୍ତ୍ତାଦ୍ୱାରା ନିଷ୍ପନ୍ନ ହୋଇ ତାହାଠାରୁ ଅସାକ୍ଷାତ ବା ଅଭିପ୍ରେତ ବ୍ୟକ୍ତି ବା ପଦାର୍ଥଠାରେ ବ୍ୟାପେ ଅର୍ଥାତ ଯେ ବାକ୍ୟ ମଧ୍ୟରେ କର୍ମ ଆକାଂକ୍ଷା କରେ ତାକୁ ସକର୍ମକ ବୋଲି ଯାଏ । ଯଥା, ରାମଚନ୍ଦ୍ର ରାବଣକୁ ଜୟ କଲେ । ଏଠାରେ 'ଜୟ କଲେ' ସକର୍ମକ କ୍ରିୟା ବୋଲି ଜାଣିବ କାରଣ କି କର୍ତ୍ତା ଯେ ରାମଚନ୍ଦ୍ର ତାଙ୍କ ଜୟ କ୍ରିୟା ରାବଣକୁ ବ୍ୟାପୁଅଛି, ରାବଣ ଯେ କର୍ମପଦ ତାକୁ ଅପେକ୍ଷା କରୁଅଛି । ତଦ୍ରୂପେ ପରମେଶ୍ୱର ଜଗତକୁ ସର୍ଜନା କଲେ ଇତ୍ୟାଦି । ଏହିରୂପେ

ଯେତେ କ୍ରିୟାପଦ କର୍ତ୍ତା, ଯାହାଠାରେ କର୍ମ ବ୍ୟାପେ ଉତ୍ପନ୍ନ ପଦକୁ ଅପେକ୍ଷା କରି ପ୍ରୟୋଗ ହୁଅନ୍ତି ତାକୁ ସକର୍ମକ କ୍ରିୟା ଜାଣିବ ।

ଦ୍ୱିତୀୟ ପ୍ରକାର କ୍ରିୟାପଦକୁ ଅକର୍ମକ ବୋଲନ୍ତି । କର୍ତ୍ତାର କର୍ମ ଅନ୍ୟ କାହାରିଠାରେ ନ ବ୍ୟାପିଲେ ଅର୍ଥାତ୍ କ୍ରିୟାପଦ କର୍ମପଦକୁ ଅପେକ୍ଷା ନ କଲେ ଅକର୍ମକ ବୋଲି ଯାଏ । ଯଥା, ଦେବଦତ୍ତ ଯାଉଅଛି, ବାଳକ ବସୁଅଛି । ଏହି ସକଳ କ୍ରିୟା ଅକର୍ମକ ବୋଲି ଜାଣିବ ।

ପୁନଶ୍ଚ ସକର୍ମକ ଅକର୍ମକ ଧାତୁରେ ଅକାର ସଂଯୋଗ କରିବା ଦ୍ୱାରା ପ୍ରେରଣାର୍ଥ କ୍ରିୟା ପ୍ରାପ୍ତ ହୁଏ । ଯଥା, କର, ଏଧାତୁରେ ଅ ଯୁକ୍ତ କଲେ 'କରା' ଏପ୍ରକାର ହୁଏ ଅର୍ଥାତ୍ ଆପେ ନ କରି ଅନ୍ୟକୁ କରାଇବାର ; ଇହାର ନାମ ପ୍ରେରଣାର୍ଥ ।

ଏହି ତିନ ପ୍ରକାରେ ଯାବନ୍ତ କ୍ରିୟାପଦ ବରନ୍ତି । ମାତ୍ର ସକର୍ମକ କ୍ରିୟା ଦୁଇ ପ୍ରକାର ଅର୍ଥାତ୍ କର୍ତ୍ତୃବାଚ୍ୟ ଏବଂ କର୍ମବାଚ୍ୟ । ତା-ହାର ଉଦାହରଣ ଏହି । ରାମଚନ୍ଦ୍ର ଜୟ କଲେ ଏଠାରେ ବିଶେଷ୍ୟ ପଦ ପ୍ରଥମା ହୋଇ କ୍ରିୟାପଦ ସଙ୍ଗେ ଅର୍ଥ ପ୍ରତିପନ୍ନ କରେ । ଭାଷାରେ କର୍ତ୍ତୃବାଚ୍ୟ କ୍ରିୟାର ଚିହ୍ନ 'କର' ଅର୍ଥାତ୍ ଯେଉଁ ସ୍ଥଳ-ରେ କର ପ୍ରୟୋଗ ହୁଏ ସେଠାରେ କ୍ରିୟାପଦ ପ୍ରାୟ କର୍ତ୍ତୃବାଚ୍ୟ ଜାଣିବ । ମାତ୍ର କର ବ୍ୟତିରେକେ ମଧ୍ୟ କେତେକ କର୍ତ୍ତୃବାଚ୍ୟ କ୍ରିୟା ମିଳେ ।

ରାବଣ ରାମଚନ୍ଦ୍ରଙ୍କ ଦ୍ୱାରା ପରାସ୍ତ ହେଲା, ଏଠାରେ ପ୍ରକୃତକର୍ତ୍ତା ତୃତୀୟା ହୁଏ ପୁଣି ପରାସ୍ତ ହେଲା ଯେ କ୍ରିୟାପଦ ସେ କର୍ମବାଚ୍ୟ । ଯଥା, ମାରା ଯାଉଅଛି । ପାଠ ହେଉଅଛି ଇତ୍ୟାଦି । ଯେଉଁ ସ୍ଥଳରେ 'ହୋ' 'ଯା' ପ୍ରୟୋଗ ହୁଅନ୍ତି ସେଠାରେ କ୍ରିୟା କର୍ମବାଚ୍ୟ ବୋଲି ଜାଣିବ ।

କ୍ରିୟାର ତିନ କାଳ ଅର୍ଥାତ୍ ଭୂତକାଳ, ବର୍ତ୍ତମାନକାଳ, ଭବି-

ଷ୍ୟତ୍କାଳ । ଯେଉଂ କ୍ରିୟା ପୂର୍ବ କୌଣସି ସମୟରେ ନିଷ୍ପନ୍ନ ହୋଇ ଯାଇଅଛି ସେ ଭୂତକାଳ । ଯଥା, ସେ ଯାଇଥିଲା ଅର୍ଥାତ୍ ଅତୀତ କୌଣସି ସମୟରେ ଯାଇଥିଲା । ସେ ଭୂତକାଳ ସମୟାନୁସାରେ ପ୍ରଥମ ହେବାରୁ ତାହାର ବିବେଚନା ପ୍ରଥମେ ହେବାର ଉଚିତ । ସେ ଭୂତକାଳରେ ଛ ଶ୍ରେଣୀ ଜଣା ଯାଏ ।

୧ ଶ୍ରେଣୀ । ଅନିଶ୍ଚିତ ଭୂତକାଳ ଯଥା ସେ ମାରିଲା
୨ ଶ୍ରେଣୀ । ଦୂରସ୍ଥ ଭୂତକାଳ ଯଥା ସେ ମାରିଥିଲା
୩ ଶ୍ରେଣୀ । ନିକଟ ଭୂତକାଳ ଯଥା ସେ ମାରିଅଛି
୪ ଶ୍ରେଣୀ । ଅନୁମାନିକ ଭୂତକାଳ ଯଥା ସେ ମାରିଥିବ
୫ ଶ୍ରେଣୀ । ସମ୍ଭାବ୍ୟ ଭୂତକାଳ ଯଥା ସେ ମାରିଥାନ୍ତା
୬ ଶ୍ରେଣୀ । ସମାପ୍ତ ଭୂତକାଳ ଯଥା ସେ ମାରିଥାଏ

କ୍ରିୟାର ଆରମ୍ଭରୁ ସମାପ୍ତି ପର୍ଯ୍ୟନ୍ତେ ଯେଉଂ କାଳ ତାକୁ ବର୍ତ୍ତମାନକାଳ ବୋଲି ଯାଏ । ସେଇ ବର୍ତ୍ତମାନ କାଳରେ ଛ ଶ୍ରେଣୀ ।

୧ ଶ୍ରେଣୀ । ଅନିଶ୍ଚିତ ବର୍ତ୍ତମାନକାଳ ଯଥା ସେ ମାରେ କି ମାରଇ
୨ ଶ୍ରେଣୀ । ଦୂରସ୍ଥ ବର୍ତ୍ତମାନକାଳ ଯଥା ସେ ମାରୁଥିଲା
୩ ଶ୍ରେଣୀ । ନିକଟ ବର୍ତ୍ତମାନକାଳ* ଯଥା ସେ ମାରୁଅଛି
୪ ଶ୍ରେଣୀ । ଅନୁମାନିକ ବର୍ତ୍ତମାନକାଳ ଯଥା ସେ ମାରୁଥିବ
୫ ଶ୍ରେଣୀ । ସମ୍ଭାବ୍ୟ ବର୍ତ୍ତମାନକାଳ ଯଥା ସେ ମାରୁଥାନ୍ତା
୬ ଶ୍ରେଣୀ । ସମାପ୍ତ ବର୍ତ୍ତମାନକାଳ ଯଥା ସେ ମାରୁଥାଏ

ଯେଉଂ କାଳରେ କ୍ରିୟା ହେବ ସେଇ କାଳକୁ ଭବିଷ୍ୟତ୍କାଳ ବୋଲୁଁ ।

---

* କିମ୍ବା ଉପସ୍ଥିତ ବର୍ତ୍ତମାନକାଳ ।

ଭବିଷ୍ୟତ୍କାଳରେ ଚାରି ଶ୍ରେଣୀ ।

୧ ଶ୍ରେଣୀ । ଶୁଦ୍ଧ ଭବିଷ୍ୟତ୍ ଯଥା ସେ ମାରିବ
୨ ଶ୍ରେଣୀ । ସମାପ୍ତ ଭବିଷ୍ୟତ୍ ଯଥା ସେ ମାରିଥିବ
୩ ଶ୍ରେଣୀ । ନିତ୍ୟ ଭବିଷ୍ୟତ୍ ଯଥା ସେ ମାରୁଥିବ
୪ ଶ୍ରେଣୀ । ସମ୍ଭାବ୍ୟ ଭବିଷ୍ୟତ୍ ଯଥା ସେ ମାରନ୍ତା

ଏରୂପେ କ୍ରିୟାପଦର ତିକାଳରେ ଷୋଡଶ ଶ୍ରେଣୀ ।

ଏତଦ୍ବ୍ୟତିରେକେ କ୍ରିୟାପଦ ଦ୍ୱାରା ଆଜ୍ଞା ଦିଆ ଗଲେ କ୍ରିୟା-ପଦକୁ ଆଦେଶ୍ୟ ବୋଲି ଯାଏ । ସେ ଅଧ୍ୟରେ ତିନ ଶ୍ରେଣୀ ଏବଂ କେବଳ ପ୍ରଥମ ମଧ୍ୟମ ପୁରୁଷରେ ଆଦେଶ୍ୟ ହୁଏ ।

୧ ଶ୍ରେଣୀ । ଶୁଦ୍ଧ ଆଦେଶ୍ୟ ଯଥା ମାର୍ ଅଥବା ମାର
୨ ଶ୍ରେଣୀ । ସମାପ୍ତ ଆଦେଶ୍ୟ ଯଥା ମାରିଥାଅ
୩ ଶ୍ରେଣୀ । ନିତ୍ୟ ଆଦେଶ୍ୟ ଯଥା ମାରୁଥାଅ

ଯେତେବେଳେ ପ୍ରାର୍ଥନା କିମ୍ବା ଅନୁମତି ବୋଧ ହୁଏ ସେତେ-ବେଳେ କ୍ରିୟାପଦକୁ ଅନୁମତ୍ୟର୍ଥ ବୋଲି ଯାଏ । ତହିଁରେ ତିନ ଶ୍ରେଣୀ,

୧ ଶ୍ରେଣୀ । ଶୁଦ୍ଧ ଅନୁମତ୍ୟର୍ଥ ଯଥା ସେ ମାରୁ
୨ ଶ୍ରେଣୀ । ସମାପ୍ତ ଅନୁମତ୍ୟର୍ଥ ଯଥା ସେ ମାରିଥାଉ
୩ ଶ୍ରେଣୀ । ନିତ୍ୟ ଅନୁମତ୍ୟର୍ଥ ଯଥା ସେ ମାରୁଥାଉ

ମାତ୍ର ଆଦେଶ୍ୟ ଅନୁମତ୍ୟର୍ଥ ପୃଥକ୍ ୨ ନ କରି ଏକତ୍ର ଲେ-ଖିବାର ରୀତି ଅଛି ଅତଏବ ପଶ୍ଚାତ୍ କ୍ରିୟାଶବ୍ଦ ସାଧନରେ ଆଦେଶ୍ୟ ଅନୁମତ୍ୟର୍ଥ ଏକତ୍ର ଲେଖା ଯାଇଅଛି ।

ଏତଦ୍ଭିନ୍ନ ଯେ କ୍ରିୟା ପ୍ରାୟ ତିକାଳ ଧାତ୍ୱନୁସାରେ ରୂପାନ୍ତର ଯୋଗ୍ୟ ନୁହଇ ଏତାଦୃଶ କ୍ରିୟା ଧାତୁର କେତେକ ନାନାବିଧ

ଅର୍ଥରେ ଅବ୍ୟୟ କ୍ରିୟା ପ୍ରାପ୍ତ ହୁଏ । ସେ ସବୁ ଶବ୍ଦ କ୍ରିୟାର ଅନ୍ତର୍ଗତ ଏବଂ କ୍ରିୟା ସଙ୍ଗେ ବିବରଣ କରିବା ଯୋଗ୍ୟ ।

କର ଧାତୁରୁ 'କରିବାକୁ' ଏହି ଅବ୍ୟୟ କୃଦନ୍ତ ମିଳେ । ଏ ଅବ୍ୟୟ କ୍ରିୟା ଅନ୍ୟାନ୍ୟ କ୍ରିୟାପଦ ମଧ୍ୟରେ ପ୍ରୟୋଗ ହୋଇ ବାହୁଲ୍ୟରୂପେ ବ୍ୟବହାର ହୁଏ । ଇହାର ନୈମିତ୍ତିକ ଅର୍ଥ ସ୍ପଷ୍ଟ ଜଣା ଯାଏ । ଯଥା, ଦେବଦତ୍ତ ଯିବାକୁ ଚହେ । ଦେଖିବାକୁ ଯାଇଥିଲି ଇତ୍ୟାଦି* ସ୍ଥଳରେ ଯିବା ପାଇଁ ବା ଯିବା ନିମନ୍ତେ ଦେବଦତ୍ତର ବାଞ୍ଛା ଅଛି ବୋଲି ବୋଧ ହୁଏ ଅତଏବ ଏ କୃଦନ୍ତକୁ ନୈମିତ୍ତିକ କୃଦନ୍ତ କହୁଁ ।

ପୁନର୍ବାର କର ଧାତୁରେ ଇକାର ଯୋଗ କଲେ ଅସମାପିକା-କ୍ରିୟା ଯାହାକୁ ବୋଲି ଯାଏ ତାହା ପ୍ରାପ୍ତ ହୁଏ । ଯଥା, ବାଳକେ ପାଠ ପଢି କ୍ରୀଡା କରିବାକୁ ଗଲେ । 'ପଢି' ଏହି ଶବ୍ଦ ଭୂତକାଳର ଅସମାପିକା କ୍ରିୟା ହେତୁ କି ପରବର୍ତ୍ତୀକ୍ରିୟା ଯାହା ସଙ୍ଗେ ଏ କୃଦନ୍ତକାରକର ଅନ୍ୱୟ ହୋଇଅଛି ତାହାର କାଳ ପୂର୍ବରେ ଏ କୃଦନ୍ତର କାଳ ଅଭିପ୍ରେତ ହୁଅଇ ।

ପୁନଶ୍ଚ ଇ୨ ଏଥିରେ ନିତ୍ୟ ଅସମାପିକା କ୍ରିୟା ହୁଏ । ଯଥା, ତାକୁ ପ୍ରହାର କରି୨ ପ୍ରାଣ ନାଶ କଲା ଅର୍ଥାତ୍ ପୁନଃ୨ ପ୍ରହାର କରିବାରୁ ପ୍ରାଣ ନାଶ କଲା ଏ ଅର୍ଥ ଅବେଶ ହୁଏ ।

ଉ ପ୍ରତ୍ୟୟରେ ବର୍ତ୍ତମାନ ଅସମାପିକା ହୁଏ । ଯଥା, ପଥରେ ଯାଉଁ ବ୍ୟାଘ୍ର ଦେଖିଲୁଁ । ଏବଂ ନିତ୍ୟବର୍ତ୍ତମାନ ଅସମାପିକା । ଯଥା, ପଥରେ ଯାଉଁ୨ ଦେଖିଲୁଁ ।

---

* ସଂସ୍କୃତରେ ଏଥିର ଉଦାହରଣ ଏହି ପ୍ରକାର । ଭୂଧାତୁରୁ ଭବିତୁଂ ଗମ୍‌ଧାତୁରୁ ଗନ୍ତୁଂ । ଯଥା, ଅହଂ ଗନ୍ତୁମିଚ୍ଛାମି । ଇଚ୍ଛତି ପକ୍ତୁଂ ଇତ୍ୟାଦି ।

ଅନନ୍ତର 'ଇଲେ' ଏହି ପ୍ରତ୍ୟୟ ଯୋଗରେ ସମ୍ଭାବ୍ୟ କୃଦନ୍ତ ପ୍ରାପ୍ତ ହୁଏ । ଯଥା, ବାଲ୍ୟକାଳରେ ବିଦ୍ୟାଭ୍ୟାସ କରିଲେ ନିପୁଣ ହେବ କିମ୍ବା ସୁବୃଷ୍ଟି ହୋଇଲେ ସୁଭିକ୍ଷ ହେବ ।* ଏହି ସ୍ଥଳମାନଙ୍କରେ କରିଲେ, ହୋଇଲେ ଏ ଦୁଇ ସମ୍ଭାବ୍ୟ କୃଦନ୍ତକ୍ରିୟା । ସେଥିରେ ତିନ ଶ୍ରେଣୀ । ଯଥା,

| | | | |
|---|---|---|---|
| ୧ ଶ୍ରେଣୀ । | ଶୁଦ୍ଧ ସମ୍ଭାବ୍ୟ କୃଦନ୍ତ | ଯଥା | କରିଲେ |
| ୨ ଶ୍ରେଣୀ । | ସମାପ୍ତ ସମ୍ଭାବ୍ୟ କୃଦନ୍ତ | ଯଥା | କରିଥିଲେ |
| ୩ ଶ୍ରେଣୀ । | ନିତ୍ୟ ସମ୍ଭାବ୍ୟ କୃଦନ୍ତ | ଯଥା | କରୁଥିଲେ |

ପୁନର୍ବାର ସମାପ୍ତ ଅର୍ଥାତ୍ କର୍ମ କୃଦନ୍ତ । ଯଥା, କୃତ, କ୍ରୀତ ଇତ୍ୟାଦି । ଯାହା ଭାଷାରେ କିଗ, କିଣା ଏହିରୂପ ପ୍ରୟୋଗ ହୁଏ ।

ଏତଦ୍ଭିନ୍ନ ସାଂଜ୍ଞିକ ଅର୍ଥାତ୍ ସଂଜ୍ଞାକ୍ରିୟା ଯାହାକୁ ବୋଲି ଯାଏ । ଏହିଁରେ ତିନ ଶ୍ରେଣୀ । ଯଥା,

| | | | |
|---|---|---|---|
| ୧ ଶ୍ରେଣୀ । | କରିବାର | କରିବାରେ | କରିବାରୁ |
| ୨ ଶ୍ରେଣୀ । | କରିଥିବାର | କରିଥିବାରେ | କରିଥିବାରୁ |
| ୩ ଶ୍ରେଣୀ । | କରୁଥିବାର | କରୁଥିବାରେ | କରୁଥିବାରୁ |

---

## ଦ୍ୱାଦଶ ପ୍ରକରଣ ।

### କ୍ରିୟାରୂପର ବିଶେଷ ବିବେଚନା ।

ପୂର୍ବରେ ତ୍ରିକାଳ ଯାହା ଲେଖା ଯାଇଅଛି ଏଠାରେ ତାହାର କି ଅର୍ଥ ଏବଂ କିଏ କେଉଁଠାରେ ପ୍ରୟୋକ୍ତବ୍ୟ ଏତଦ୍ବିଷୟ ଅଳ୍ପ ମାତ୍ର ବିବେଚନା କରିବାର ଉଚିତ ।

---

*କରିଲେ, ହୋଇଲେ ଭାଷାରେ କଲେ, ହେଲେ ଏରୂପ ସଂକ୍ଷେପ କରି ଉକ୍ତ ହୁଏ ।

ପ୍ରଥମେ ଭୂତକାଳର ୪ ଶ୍ରେଣୀ ।

୧ ଶ୍ରେଣୀ । କଲୁଁ, କଲ, କଲା । ଏବଂ ତନ ଶ୍ରେଣୀ କରଅଛୁଁ, କରଅଛ, କରଅଛି ।

ଯେମନ୍ତ ବର୍ତ୍ତମାନ କାଳରେ କରୁଁ ଅନଶ୍ଚିତ ତଦ୍ରୂପ ଏହି ଭୂତକାଳରେ କଲୁଁ କାଳ ସମ୍ବନ୍ଧରେ ପ୍ରାପ୍ତ ଅନଶ୍ଚିତ ଜଣା ଯାଏ । ମାତ୍ର ଏ ଶ୍ରେଣୀ ଏବଂ ତନ ଶ୍ରେଣୀ ଅର୍ଥାତ୍ କରଅଛୁଁ ଇତ୍ୟାଦି ଦୁହେଁ ଏକାର୍ଥରେ ବ୍ୟବହାର ହୁଅନ୍ତି ତଥାପି କରଅଛୁଁ ଇହାର କାଳ ନକଟ ବୋଧ ହୁଏ । ଯଥା, ସେ ଆପଣା ପୁତ୍ରକୁ ମାରଅଛି ଏହି ପ୍ରକାର ଉକ୍ତିରୁ ବୋଧ ହୁଏ କ ଏହିକ୍ଷଣି କମ୍ବା ନକଟରେ ମାରବା କ୍ରିୟା ସମାପ୍ତ ହୋଇଅଛି । ମାତ୍ର ସେ ଆପଣା ପୁତ୍ରକୁ ମାରଲା କମ୍ବା ମାଇଲା ଏଥିରୁ କାଳର ନୈକଟ୍ୟ ବା ଦୂରତ୍ୱ ବ୍ୟକ୍ତ ହୁଏ ନାହିଁ । କୌଣସି ସମୟରେ ମାରଲା, ଏଠୁଯେ ନକଟ, ଦୂର ଉଭୟକାଳରେ ମାରଲା ଅଦେଶ ହୋଇ ପାରେ । ଯଥା, ଏହି- କ୍ଷଣି ମାରଲା କମ୍ବା ପ୍ରାତଃକାଳେ ମାରଲା ବା କାଲ୍ ମାଇଲା ଅଥବା ଅନେକ ଦିନ ହେଲା ମାରଲା ।

ପୁନବାର ଶୀଘ୍ର ଆସ ଇହା ଉତ୍ତରରେ ଗଲୁଁ ଏଠାରେ ଭବି- ଷ୍ୟତ୍କାଳର ଅର୍ଥ ଅଦେଶ ହେଉଅଛି । ଅତଏବ ଏହି ପ୍ରଥମ ଶ୍ରେଣୀର କାଳ ଅନଶ୍ଚିତ । ଏବଂ ତନ ଶ୍ରେଣୀର କାଳ ନକଟ ବୋଧ ହୁଏ ଏହେତୁରୁ ଏହି ତୃତୀୟ ଶ୍ରେଣୀ ନକଟ ବା ସାମୀପ୍ୟ ବର୍ତ୍ତମାନ ବୋଲାଏ ଅଉ ସଂସ୍କୃତର ଅଦ୍ୟତନ ଅତୀତ କାଳ ସମାନ । ହେତୁ କ ଅଦ୍ୟ ଅର୍ଥାତ୍ ଆଜଦନ ଭିତରେ ଯେଉଁ କ୍ରିୟା ହୋଇ ଥାଏ ତତ୍ସମ୍ବନ୍ଧରେ ଏହି ତୃତୀୟ ଶ୍ରେଣୀର ପ୍ରୟୋଗ ହେବ ।

ପୁନବାର ଏହି ତୃତୀୟ ଶ୍ରେଣୀକୁ ଶୁଦ୍ଧ ଭୂତକାଳ ବୋଲା ଯାଏ । ଏବଂ କେତେବେଳେ ବଶେଷ କାଳ ସଙ୍ଗେ ତାହାର ସମ୍ପର୍କ ନ ଥାଏ । ଯଥା, ଜନ୍ମାବଧି ମାତା ପିତା ତୁମ୍ଭ ସେବା ଅଉ ପ୍ରତପାଳନ କର-

ଅଛନ୍ତି ଆଜ କି ସେମାନଙ୍କୁ ତ୍ୟାଗ କରିବ? ଏଠାରେ ଜାଣିବ ଯେ ଆଜ ପର୍ଯ୍ୟନ୍ତେ ଯେଉଁ କାଳ ଅତୀତ ହୋଇଅଛି ତାହା ସହିତ ଏ ଭୂତସ୍ଥ ଶ୍ରେଣୀ ଆଦେଶ ହୁଏ ।

୩ ଶ୍ରେଣୀ । କରିଥିଲୁଁ, କରିଥିଲ, କରିଥିଲା ।

ଏହି ଦୂରସ୍ଥ ଭୂତ । ଯଥା, ବ୍ୟାଘ୍ର କହୁଅଛି ପୂର୍ବରେ ଆମ୍ଭେ ଗୋଟିଏ ମନୁଷ୍ୟ ମାରିଥିଲୁଁ ଇତ୍ୟାଦି । ତ୍ରେତାଯୁଗରେ ରାମ ଅବତୀର୍ଣ୍ଣ ହୋଇଥିଲେ ଏବଂ ଅନେକ ଅଲୌକିକ କର୍ମ କରିଥିଲେ । ସଂସ୍କୃତରେ ଏହି କାଳର ନାମ ପରୋକ୍ଷ ।

୪ ଶ୍ରେଣୀ । ମାରିଥିବୁଁ, ମାରିଥିବ, ମାରିଥିବ ।

ଏ ଅନୁମାନକ ଭୂତ ହେତୁ କି ମାରିଥିବ କହିଲେ ସନ୍ଦେହ କି ଅନୁମାନ ଜଣା ଯାଏ । ଯଥା, ଗୋବିନ୍ଦ ଦେବଦତ୍ତକୁ ମାରିଥିବ ଅର୍ଥାତ୍ ନିଶ୍ଚୟ କରି କହି ନ ପାରି ମାତ୍ର ଅନୁମାନ କରୁଅଛୁଁ କି ଦେବଦତ୍ତକୁ ମାରିଥିଲା । ମାରିବା କ୍ରିୟା ନିଶ୍ଚୟରୂପେ ସ୍ମରଣ ବା ଜ୍ଞାନର ବିଷୟ ହୋଇ ନ ଥାଏ ଭବିଷ୍ୟତ୍କାଳରେ ମାରିଥିବ ପ୍ରୟୋଗ ହେଲେ ଭିନ୍ନ ଅର୍ଥ ବୋଧ ହୁଏ, ତାହା ଉଚିତ ସ୍ଥଳରେ ବିବେଚନା ହେବ ।

୫ ଶ୍ରେଣୀ । ମାରିଥାନ୍ତୁଁ, ମାରିଥାନ୍ତ, ମାରିଥାନ୍ତା ।

ଏହି ପଞ୍ଚମ ଶ୍ରେଣୀର ଅର୍ଥ ସମ୍ପୂର୍ଣ୍ଣ ହେବା ପାଇଁ ବାକ୍ୟ ମଧ୍ୟରେ ଅନ୍ୟ କ୍ରିୟାର ଅପେକ୍ଷା ଥାଏ ଆଉ ତଦ୍ଦ୍ୱାରା କର୍ତ୍ତା ପଦର ଶକ୍ତି କିମ୍ବା ଇଚ୍ଛା ପ୍ରକାଶ ହୁଏ । ଏ ଶ୍ରେଣୀ ଅର୍ଥରେ ଯେବେ, ତେବେ ଏ ଦୁଇ ଅବ୍ୟୟ ଶବ୍ଦ ଅଭିପ୍ରେତ । ଯଥା, ଯେବେ ବାଲ୍ୟକାଳରେ ବିଦ୍ୟାଭ୍ୟାସ କରି ଥାନ୍ତ ତେବେ ବୃଦ୍ଧକାଳରେ ଏତେ କ୍ଲେଶ ପାଇ ନ ଥାନ୍ତ । ସେ ଯେବେ ମାରିଥାନ୍ତା ତେବେ ଆମ୍ଭେ ମାରିଥାନ୍ତୁଁ । ଏହି ସମ୍ଭାବ୍ୟ କ୍ରିୟା ତିନି କାଳରେ ତିନି ପ୍ରକାର । ଯଥା, ଭୂତକାଳରେ ମାରିଥାନ୍ତୁଁ, ମାରିଥାନ୍ତ, ମାରିଥାନ୍ତା ।

ବର୍ତ୍ତମାନକାଳରେ ମାରୁଥାନ୍ତୁ, ମାରୁଥାନ୍ତ, ମାରୁଥାନ୍ତା । ଭବିଷ୍ୟତ୍କାଳରେ ମାରନ୍ତୁ, ମାରନ୍ତ, ମାରନ୍ତା । ଯେବେ, ତେବେ ଏ ଅବ୍ୟୟ ଶବ୍ଦ ବାକ୍ୟ ମଧ୍ୟରେ ଉପସ୍ଥିତ ଥିଲେ ମାରଥାନ୍ତୁ ଇତ୍ୟାଦି ପ୍ରୟୋଗ ହେବ । ମାତ୍ର ଏହି ସମ୍ଭାବନା ଅର୍ଥରେ ଯେବେ, ତେବେ ପ୍ରୟୋଗ ନୋହିଲେ ସମ୍ଭାବ୍ୟ ଭୂତାଦି ଅର୍ଥାତ୍ ଭୂତରେ ମାରିଥିଲେ, ବର୍ତ୍ତମାନରେ ମାରୁଥିଲେ, ଭବିଷ୍ୟତ୍କାଳରେ ମାରିଲେ ଆଦେଶ ହେବ ।

୬ ଶ୍ରେଣୀ । ମାରିଥାଉଁ, ମାରିଥାଅ, ମାରିଥାଏ ।

ଏହି ଛଅ ଶ୍ରେଣୀର ଉଦାହରଣ ଏହି । ସେ ଆପଣା ସ୍ତ୍ରୀକୁ ମାରିଥାଏ, ଏଠାରେ ଅତୀତକାଳର ବିବରଣକୁ ସାକ୍ଷାତ୍ ଥିଲା ପ୍ରାୟ ବକ୍ତା କହୁଅଛି । ମାରି କରି ଥାଏ ଅର୍ଥାତ୍ ଗଲା କୌଣସି ବିଶେଷ ସମୟରେ ସେହିକ୍ଷଣେ ମାରିବା କ୍ରିୟା ସମାପ୍ତ ହୋଇଥିଲା ।

ଦ୍ୱିତୀୟରେ ବର୍ତ୍ତମାନକାଳର ଛଅ ଶ୍ରେଣୀ ।

୧ ଶ୍ରେଣୀ । ମାରୁଁ, ମାର, ମାରେ, କିମ୍ବା ମାରଇ ।

ମାରୁଁ ଏହି ପ୍ରକାର ଉକ୍ତିରେ କାଳର ନୈକଟ୍ୟ କିମ୍ବା ଦୂରତ୍ୱ ନିଶ୍ଚିତ ରୂପେ ବୋଧ ହୁଏ ନାହିଁ । ଯଥା, ପ୍ରାତଃକାଳେ ଉଠି ଅମ୍ଭେ ପ୍ରଥମେ ତାଙ୍କ ଅନୁଗ୍ରହ ସ୍ମରଣ କରୁଁ, ଯେ ଅନ୍ଧକାର ନିଦ୍ରା ସମୟରେ ରକ୍ଷା କରିଥାନ୍ତି । ଏବଂ ଏ ବେଦନାର ଉପଶମ ନୋହିବା ପର୍ଯ୍ୟନ୍ତେ ଦଧି ଭୋଜନ ନ କର । ପୁଣି ସେ ଆପଣା ପୂର୍ବାବସ୍ଥା ସ୍ମରଣ କରି ଦୀନଦୁଃଖି ଲୋକଙ୍କୁ ଅତିଶୟ କୃପାଭାବରେ ଅନାଏ ଆଉ ସେମାନଙ୍କର ବହୁ ଉପକାର କରେ । ଏହି ତିନି ଉଦାହରଣରେ କରୁଁ, କର, ଆଉ କରେ ଏତିନି କ୍ରିୟାର କାଳ ଅନିଶ୍ଚିତ । ବରଂ ପ୍ରାତଃକାଳେ ଉଠି ଅମ୍ଭେ ପ୍ରଥମେ ତାଙ୍କ ଅନୁଗ୍ରହ

ସ୍ମରଣ କର୍‌ଁ, ଏଥିର ଏହ ଅମୃର ନିତ୍ୟ ବ୍ୟବହାର ଅଟେ ବୋଲ ବୋଧ ହୁଏ । ଅତଏବ ଏହ ସ୍ଥଳରେ କାଲ ଅନିଶ୍ଚିତ ।

୨ ଶ୍ରେଣୀ । ମାର୍‌ଅଛୁଁ, ମାର୍‌ଅଛ, ମାର୍‌ଅଛ ।

ଏଥିର୍ ନିକଟ ଅର୍ଥାତ୍ ଉପସ୍ଥିତ ବର୍ତ୍ତମାନାର୍ଥ ଅନାସ୍ପର୍ଶରେ ଜଣା ଯାଏ । ଯଥା, ସେ ଧର୍ମଶାସ୍ତ୍ର ପାଠ କର୍‌ଅଛ ଅର୍ଥାତ୍ ପାଠର କ୍ରିୟା ସମାପ୍ତ ହୋଇ ନାହିଁ ମାତ୍ର ବର୍ତ୍ତମାନ ହେଉଅଛ ।

ପୁନର୍ବାର ଏ ଦ୍ୱିତୀୟ ଶ୍ରେଣୀର ଭବିଷ୍ୟତ ସାମୀପ୍ୟ ଅର୍ଥ ହୁଏ । ଯଥା, ତୁମ୍ଭେ କେତେବେଳେ ଯିବ ଏହ ପ୍ରଶ୍ନ ଉତ୍ତରରେ ଅମ୍ଭେ ଏହିକ୍ଷଣି ଯାଉଅଛୁଁ ଅର୍ଥାତ୍ ବର୍ତ୍ତମାନ ପର୍ଯ୍ୟନ୍ତେ ଗମନ ନ କର ଅସନ୍ନ ଅତି ସମୀପକାଲରେ ଯିବ୍ ବୋଲ୍ କହୁଅଛ ।

୩ ଶ୍ରେଣୀ । ମାର୍‌ଥିଲୁଁ, ମାର୍‌ଥିଲ, ମାର୍‌ଥିଲା ।

ଏ ଦୂରସ୍ଥ ବର୍ତ୍ତମାନ କିମ୍ବା ଅତୀତ କ ଗଲ କାଲର ବର୍ତ୍ତମାନ । ଯଥା, ଦୂତ ପ୍ରବେଶ ହେବାବେଳେ ରାଜା ଯାତ୍ରା କରୁଥିଲେ ଅର୍ଥାତ୍ ଦୂତର ପ୍ରବେଶିବା ସମୟରେ ରାଜାଙ୍କ ଯାତ୍ରା କରିବା କ୍ରିୟା ସମାପ୍ତ ନ ହୋଇ ବର୍ତ୍ତମାନ ଥିଲା ଏହ ଅର୍ଥ ସ୍ପଷ୍ଟ ବୋଧ ହୁଏ ।

୪ ଶ୍ରେଣୀ । ମାର୍‌ଥିବୁଁ, ମାର୍‌ଥିବ, ମାର୍‌ଥିବ ।

ଏହ ଶ୍ରେଣୀ ପୂର୍ବୋକ୍ତ ଭୂତକାଲ ଚତୁର୍ଥ ଶ୍ରେଣୀର ସମାନାର୍ଥ, କେବଳ ଏ ବର୍ତ୍ତମାନ ସେ ଭୂତ ।

୫ ଶ୍ରେଣୀ । ମାର୍‌ଥାନ୍ତୁଁ, ମାର୍‌ଥାନ୍ତ, ମାର୍‌ଥାନ୍ତା ।

ଏ ଶ୍ରେଣୀ କାଳଭେଦରେ ଭୂତକାଳର ପଞ୍ଚମ ଶ୍ରେଣୀ ସମାନ ।

୬ ଶ୍ରେଣୀ । ମାର୍‌ଥାଉଁ, ମାର୍‌ଥାଅ, ମାର୍‌ଥାଏ ।

ଏ ଶ୍ରେଣୀର ଅର୍ଥ ଅତୀତକାଳକୁ ପ୍ରବର୍ତ୍ତେ ତଥାପି ମାର୍‌ଥିଲୁଁ ଯେପ୍ରକାରେ ବର୍ତ୍ତମାନ କାଳରେ ଅନ୍ତର୍ଗତ ସେପ୍ରକାରେ ଏ ଶ୍ରେଣୀ ବର୍ତ୍ତମାନ । କର୍‌ଥାଉଁ କହନ୍ତେ, ପୂର୍ବରେ ଅମୃର ନିତ୍ୟ ବ୍ୟବହାର ଥିଲା ଏହ ଅର୍ଥ ସ୍ପଷ୍ଟ ଜଣା ଯାଏ । ଯଥା, ଯୁବା କାଳରେ ଶତ୍ରୁ

ସଙ୍ଗେ ଯୁଦ୍ଧ କରୁଥାଉଁ ବର୍ତ୍ତମାନ ବୃଦ୍ଧ ହୋଇ ଯୁଦ୍ଧରୁ ଅସମର୍ଥ ହୋଇଅଛୁଁ, ଅର୍ଥାତ୍ ଯୁବାକାଳରେ ଶତ୍ରୁଙ୍କ ସଙ୍ଗେ ଯୁଦ୍ଧ କରିବାର ଅଭ୍ୟାସ ନିତ୍ୟ ବ୍ୟବହାର ଥିଲା ।

କିମ୍ବା, ସେ ପ୍ରହାର କରୁଥାଏ ଅମ୍ଭେ କହିଲୁଁ, ରେ ଦୁରାତ୍ମା ଇତ୍ୟାଦି । ଏଠାରେ ନିତ୍ୟ ବ୍ୟବହାର ଅର୍ଥର ଅଭିପ୍ରାୟ ନାହିଁ । କେବଳ ପୂର୍ବକାଳର ବର୍ତ୍ତମାନ ଅର୍ଥାତ୍ ସେ ଗତ କୌଣସି ସମୟରେ ଯେତେବେଳେ ପ୍ରହାର କରୁଥିଲା ଅମ୍ଭେ ସେଠାରେ ଉପସ୍ଥିତ ଥାଇଁ, କହିଲୁଁ ରେ ଦୁରାତ୍ମା ଇତ୍ୟାଦି ।

## ଭୂତାର୍ଥରେ ଭବିଷ୍ୟତ୍କାଳର ଚାରି ଶ୍ରେଣୀ ।

୧ ଶ୍ରେଣୀ । ମାରିବୁଁ, ମାରିବ, ମାରିବ ।

ଏ ଶୁଦ୍ଧ କିମ୍ବା କାଳ ସମ୍ବନ୍ଧରେ ଅନିଶ୍ଚିତ ଭବିଷ୍ୟତ୍ । ଯଥା, ସେ କଲିକତା ଯିବ । ଅର୍ଥାତ୍ ଆଗାମି କୌଣସି କାଳରେ ଯିବ । ଯିବାକାଳ ନିକଟ ଅଛି କି ଦୂର ଅଛି ଏବିଷୟ ଅନିଶ୍ଚିତ ।

୨ ଶ୍ରେଣୀ । ମାରିଥିବୁଁ, ମାରିଥିବ, ମାରିଥିବ ।

ମାରିଥିବୁଁ, କି ମାରିଥିବ ଏଠାରେ ଆଗାମି କୌଣସି ସମୟରେ ମାରିବା କ୍ରିୟାର ସମାପ୍ତି ଅଦେଶ ହେଲା । ଯଥା, ବାର୍ତ୍ତା ପହୁଞ୍ଚିବା ସମୟରେ ତୁମ୍ଭେ ପ୍ରସ୍ଥାନ କରିଥିବ ଅର୍ଥାତ୍ ବାର୍ତ୍ତା ପହୁଞ୍ଚିବା ଅପେକ୍ଷାରେ ତୁମ୍ଭେ ପ୍ରସ୍ଥାନ କରିଥିବ ।

୩ ଶ୍ରେଣୀ । ମାରୁଥିବୁଁ, ମାରୁଥିବ, ମାରୁଥିବ ।

ମାରୁଥିବ ଏଠାରେ ଆଗାମି କାଳ ସହିତ କ୍ରିୟାର ପୌନଃପୁନ୍ୟ ଅଥବା ନିତ୍ୟତା ପ୍ରତୀତ ହୁଏ । ଏହେତୁରୁ ଏ ନିତ୍ୟ ଭବିଷ୍ୟତ୍ ବୋଲାଏ ।

୪ ଶ୍ରେଣୀ । ମାରନ୍ତୁଁ, ମାରନ୍ତ, ମାରନ୍ତା ।

ମାରନ୍ତୁଁ ଏହି ସ୍ଥଳରେ ମାରିବା କ୍ରିୟା ସମାପ୍ତ ହୋଇ ନାହିଁ

ପୁଣି ଅନ୍ୟ ପୂର୍ବସ୍ଥିତ କ୍ରିୟାର ଅପେକ୍ଷା କମ୍ବା ସମ୍ଭାବନା ହୁଏ । ଅଉ ଯେବେ, ତେବେ ଏ ଦୁଇ ଅବ୍ୟୟ ଶବ୍ଦ ସହବର୍ତ୍ତୀ ହୋଇ ବ୍ୟବହାର ହୁଏ, ଯଥା, ଯେବେ ସୁବୃଷ୍ଟି ଅଉ ସୁରାଜ୍ୟ ହୁଅନ୍ତା ତେବେ ସୁଭିକ୍ଷ ହୁଅନ୍ତା । ଏଥି ପ୍ରକାରେ ଇହାକୁ ସମ୍ଭାବ୍ୟ ଭବିଷ୍ୟତ୍ ବୋଲି ଯାଏ ।

ଭବିଷ୍ୟତ୍କାଳର ଉପର ଲେଖିତ ତ୍ରୟ ଶ୍ରେଣୀ ଉତ୍ତମ ପୁରୁଷର ଅନ୍ତ ଉକାର ପରିବର୍ତ୍ତରେ ଅକାର ବ୍ୟବହାର ହୁଏ । ଯଥା, ପ୍ରଥମ ଶ୍ରେଣୀ ମାରିବୁଁ କି ମାରିବା । ଦ୍ୱିତୀୟ ଶ୍ରେଣୀ ମାରିଥିବୁଁ କି କରିଥିବା ଇତ୍ୟାଦି ।

କୌଣସି କାର୍ଯ୍ୟ କରିବା ପାଇଁ ଆଜ୍ଞା ହେଲେ ଅଥବା କରାଇ ଦେବା ପାଇଁ ପ୍ରାର୍ଥନା ହେଲେ କ୍ରିୟାପଦକୁ ଆଦେଶ୍ୟ ବା ପ୍ରାର୍ଥନୀୟ ବୋଲି ଯାଏ । ମାତ୍ର ଅଦେଶ୍ୟର ଭାବ କେବଳ ମଧ୍ୟମ ଭୃତୀୟ ପୁରୁଷରେ ପ୍ରୟୋଗ ହୁଏ । ଯଥା, ଅମ୍ଭେ ମାରୁଁ କି ଇତର ଭାଷାରେ ମୁଁ ମାରଇଁ ଏ ଅଦେଶ୍ୟ ନୁହେ ପ୍ରାର୍ଥନୀୟ । କିନ୍ତୁ ମାର କହିଲେ ଆଜ୍ଞା ଅର୍ଥ ଅଦେଶ ହୁଏ । ଯଥା, ସେ ବ୍ୟକ୍ତିକୁ ମାର । ଏତଦ୍ବିଷୟରେ କୃଦନ୍ତ କାରକର ଯାହା ପୂର୍ବରେ ବିସ୍ତାର କରି ଲେଖା ଯାଇଅଛି ଏଠାରେ ତହିଁର ବିଶେଷ ବିବେଚନା ଅନାବଶ୍ୟକ । ଏତକ ମାତ୍ର ସ୍ମରଣ କରିବ ଯେ ଶୁଦ୍ଧ ଅଦେଶ୍ୟରେ ମଧ୍ୟମ ପୁରୁଷ କାରକ ଅର୍ଥାତ୍ ମାର, ଧର, ପଡ଼ ଇତ୍ୟାଦି ଇହାକୁ ଭାଷା କ୍ରିୟାର ଧାତୁ ବୋଲି ଜାଣିବ । ତାହାର କାରଣ ୪୯ ପୃଷ୍ଠରେ ଅନ୍ୱେଷଣ କଲେ ମିଳିବ ।

---

## ତ୍ରୟୋଦଶ ପ୍ରକରଣ ।

## କ୍ରିୟାପଦର ବିଭକ୍ତି ।

ବ୍ୟାକରଣରେ ଯାହାକୁ ସହକାରି କ୍ରିୟା ବୋଲି ଯାଏ ତାହା ବ୍ୟତିରେକେ ଅନେକ କ୍ରିୟା ବିଶେଷରୂପେ ବିକୃତ ସଂସ୍କୃତ କ୍ରିୟାପଦ ସାଧନ ହୋଇ ନ ପାରନ୍ତି । ଏ ସହକାରି କ୍ରିୟାପଦର ଧାତୁ ସଂସ୍କୃତରେ ଅସ୍, ଭୂ, କୃ ଇତ୍ୟାଦି । ତହିଁର ଭାଷାରେ ଅଛୁଁ, ହେଉଁ, କରୁଁ, ଏହି ପ୍ରକାର ସହକାରି କ୍ରିୟା ହୁଅନ୍ତି । ଏ ତିନି ସହକାରି କ୍ରିୟା ଅନ୍ୟାନ୍ୟ ଧାତୁ ସଙ୍ଗେ ସଂଲଗ୍ନ ହେଲେ ସେମାନଙ୍କୁ ସାଧନ ଯୋଗ୍ୟ କରନ୍ତି । ଏହେତୁରୁ ତାହାର ନାମ ସହକାରି ।

ତୃତୀୟ ପୁରୁଷ କ୍ରିୟାର କର୍ତ୍ତା ନାମ ଅର୍ଥାତ୍ ସେ; ମଧ୍ୟମ ପୁରୁଷ କ୍ରିୟାର କର୍ତ୍ତା ଯୁଷ୍ମଦ ଅର୍ଥାତ୍ ତୁମ୍ଭେ; ଉତ୍ତମ ପୁରୁଷ କ୍ରିୟାର କର୍ତ୍ତା ଅସ୍ମଦ ଅର୍ଥାତ୍ ଅମ୍ଭେ, ଏହି ତିନି ଭେଦରେ କ୍ରିୟାପଦ ସାଧନ ହୁଅଇ ।

କ୍ରିୟାପଦରେ ଲିଙ୍ଗ ଭେଦର ଚିହ୍ନ ନାହିଁ । ଯଥା, ସେ ଲେଖିଲା ଅର୍ଥାତ୍ ସେ ପୁରୁଷ ଅବା ସ୍ତ୍ରୀ ଲେଖିଲା । କ୍ରିୟାର ଦ୍ୱିବଚନ; କେବଳ ତୃତୀୟ ପୁରୁଷରେ ଏକବଚନ ବହୁବଚନ ଭିନ୍ନ ଜଣା ଯାଏ ଯଥା, ସେ କରେ । ବହୁବଚନରେ ସେମାନେ କରନ୍ତି । ସେ କଲା । ବହୁବଚନରେ ସେମାନେ କଲେ । ସେ କରନ୍ତା । ବହୁବଚନରେ ସେମାନେ କରନ୍ତେ ଇତ୍ୟାଦି ।

ମାନ୍ୟ, ଅମାନ୍ୟ ଭେଦରେ କ୍ରିୟାପଦର ବିଭକ୍ତି ଦୁଇ ପ୍ରକାର ହୁଅନ୍ତି । ଯଥା, ଅମ୍ଭେ କରୁଁ, ଏ ମାନ୍ୟ । ମୁଁ କରେ, ଏ ଅମାନ୍ୟ । ସେହିରୂପେ ଅମ୍ଭେ କରିଥିଲୁଁ, ମୁଁ କରିଥିଲି ଇତ୍ୟାଦି ।

### ଭୂତକାଳ ।

ପ୍ରଥମ ଶ୍ରେଣୀ । ଅନିଶ୍ଚିତ ଭୂତକାଳ ।

୧ ପୁ, ଇଲୁଁ । ୨ ପୁ, ଇଲ । ୩ ପୁ, ଇଲା । ବହୁବଚନରେ ଇଲେ ।*

ଦ୍ୱିତୀୟ ଶ୍ରେଣୀ ଅର୍ଥାତ୍ ଦୂରସ୍ଥ ଭୂତ ।

୧ ପୁ, ଇଥିଲୁଁ । ୨ ପୁ, ଇଥିଲ । ୩ ପୁ, ଇଥିଲା । ବହୁବଚନରେ ଇଥିଲେ ।

ତୃତୀୟ ଶ୍ରେଣୀ । ନିକଟ ଭୂତ ।

୧ ପୁ, ଇଅଛୁଁ । ୨ ପୁ, ଇଅଛ । ୩ ପୁ, ଇଅଛି । ବହୁବଚନରେ ଇଅଛନ୍ତି ।

ଚତୁର୍ଥ ଶ୍ରେଣୀ ଅର୍ଥାତ୍ ଅନୁମାନିକ ଭୂତ ।

୧ ପୁ, ଇଥିବୁଁ । ୨ ପୁ, ଇଥିବ । ୩ ପୁ, ଇଥିବ । ବହୁବଚନରେ ଇଥିବେ ।

ପଞ୍ଚମ ଶ୍ରେଣୀ । ସମ୍ଭାବ୍ୟ ଭୂତ ।

୧ ପୁ, ଇଥାନ୍ତୁଁ । ୨ ପୁ, ଇଥାନ୍ତ । ୩ ପୁ, ଇଥାନ୍ତା । ବହୁବଚନରେ ଇଥାନ୍ତେ ।

ଷଷ୍ଠ ଶ୍ରେଣୀ ଅର୍ଥାତ୍ ସମାପ୍ତ ଭୂତ ।

୧ ପୁ, ଇଥାଉଁ । ୨ ପୁ, ଇଥାଅ । ୩ ପୁ, ଇଥାଏ । ବହୁବଚନରେ ଇଥାନ୍ତି ।

## ବର୍ତ୍ତମାନକାଳ ।

ପ୍ରଥମ ଶ୍ରେଣୀ ଅର୍ଥାତ୍ ଅନିଶ୍ଚିତ ବର୍ତ୍ତମାନ ।

୧ ପୁ, ଉଁ । ୨ ପୁ, ଅ । ୩ ପୁ, ଏ । ବହୁବଚନରେ ଅନ୍ତି ।

---

* ଏଠାରେ ୧ ପୁ, ୨ ପୁ, ୩ ପୁ, ତାହାର ଅର୍ଥ ପ୍ରଥମ କି ଉତ୍ତମ ପୁରୁଷ ଅର୍ଥାତ୍ ଅମ୍ଭେ; ଦ୍ୱିତୀୟ କି ମଧ୍ୟମ ପୁରୁଷ ଅର୍ଥାତ୍ ତୁମ୍ଭେ; ତୃତୀୟ ପୁରୁଷ ଅର୍ଥାତ୍ ସେ ।

ଦ୍ୱିତୀୟ ଶ୍ରେଣୀ ଅର୍ଥାତ୍ ଦୂରସ୍ଥ ବର୍ତ୍ତମାନ ।

୧ ପୁ, ଉଠିଲୁଁ । ୨ ପୁ, ଉଠିଲ, । ୩ ପୁ, ଉଠିଲା । ବହୁବଚନ-
ରେ ଉଠିଲେ ।

ତୃତୀୟ ଶ୍ରେଣୀ । ନିକଟ ବର୍ତ୍ତମାନ ।

୧ ପୁ, ଉଠିଅଛୁଁ । ୨ ପୁ, ଉଠିଅଛ । ୩ ପୁ, ଉଠିଅଛି । ବହୁବଚନ-
ରେ ଉଠିଅଛନ୍ତି ।

ଚତୁର୍ଥ ଶ୍ରେଣୀ ଅର୍ଥାତ୍ ଅନୁମାନକ ବର୍ତ୍ତମାନ ।

୧ ପୁ, ଉଠିବୁଁ । ୨ ପୁ, ଉଠିବ । ୩ ପୁ, ଉଠିବ । ବହୁବଚନ-
ରେ ଉଠିବେ ।

ପଞ୍ଚମ ଶ୍ରେଣୀ ଅର୍ଥାତ୍ ସମ୍ଭାବ୍ୟ ବର୍ତ୍ତମାନ ।

୧ ପୁ, ଉଠାନ୍ତୁ । ୨ ପୁ, ଉଠାନ୍ତ । ୩ ପୁ, ଉଠାନ୍ତା । ବହୁ-
ବଚନରେ ଉଠାନ୍ତେ ।

ଷଷ୍ଠ ଶ୍ରେଣୀ ଅର୍ଥାତ୍ ନମ୍ର ବର୍ତ୍ତମାନ ।

୧ ପୁ, ଉଠାଉଁ । ୨ ପୁ, ଉଠାଅ । ୩ ପୁ, ଉଠାଏ । ବହୁ-
ବଚନରେ ଉଠାନ୍ତି ।

## ଭବିଷ୍ୟତ୍କାଳ ।

ପ୍ରଥମ ଶ୍ରେଣୀ ଅର୍ଥାତ୍ ଶୁଦ୍ଧ ଭବିଷ୍ୟତ୍ ।

୧ ପୁ, ଉଠିବୁଁ । ୨ ପୁ, ଉଠିବ । ୩ ପୁ, ଉଠିବ । ବହୁବଚନରେ ଉଠିବେ ।

ଦ୍ୱିତୀୟ ଶ୍ରେଣୀ ଅର୍ଥାତ୍ ସମାପ୍ତ ଭବିଷ୍ୟତ୍ ।

୧ ପୁ, ଉଠିଥିବୁଁ । ୨ ପୁ, ଉଠିଥିବ । ୩ ପୁ, ଉଠିଥିବ । ବହୁବଚନ-
ରେ ଉଠିଥିବେ ।

ତୃତୀୟ ଶ୍ରେଣୀ ଅର୍ଥାତ୍ ନିତ୍ୟ ଭବିଷ୍ୟତ୍ ।

୧ ପୁ, ଉଠିବୁଁ । ୨ ପୁ, ଉଠିବ । ୩ ପୁ, ଉଠିବ । ବହୁବଚନ-
ରେ ଉଠିବେ ।

ଚତୁର୍ଥ ଶ୍ରେଣୀ । ସମ୍ଭାବ୍ୟ ଭବିଷ୍ୟତ ।

୧ ପୁ, ଅନ୍ତୁ । ୨ ପୁ, ଅନ୍ତ । ୩ ପୁ, ଅନ୍ତା । ବହୁବଚନରେ ଅନ୍ତେ ।

ଅଦେଶ୍ୟ ଧାତୁ ।

ପ୍ରଥମ ଶ୍ରେଣୀ ଅର୍ଥାତ ଶୁଦ୍ଧ ଅଦେଶ୍ୟ ।

୧ ପୁ, ଉଁ । ୨ ପୁ, ଅ । ୩ ପୁ, ଉ । ବହୁବଚନରେ ଉନ୍ତୁ ।

ଦ୍ୱିତୀୟ ଶ୍ରେଣୀ ଅର୍ଥାତ ସମାପ୍ତ ଅଦେଶ୍ୟ ।

୧ ପୁ, ଇଥାଉଁ । ୨ ପୁ, ଇଥାଅ । ୩ ପୁ, ଇଥାଉ । ବହୁବଚନରେ ଇଥାଉନ୍ତୁ ।

ତୃତୀୟ ଶ୍ରେଣୀ ଅର୍ଥାତ ନିତ୍ୟ ଅଦେଶ୍ୟ ।

୧ ପୁ, ଉଥାଉଁ । ୨ ପୁ, ଉଥାଅ । ୩ ପୁ, ଉଥାଉ । ବହୁବଚନରେ ଉଥାଉନ୍ତୁ ।

କୃଦନ୍ତ ଧାତୁ ।

କର୍ମିତ୍ୱାର୍ଥ କୃଦନ୍ତ । ଇବାକୁ ।

ସମାପ୍ତ କୃଦନ୍ତ । ଇଲା ।*

ଅସମାପିକାକ୍ରିୟା । ଇ ।

ନିତ୍ୟ ଅସମାପିକାକ୍ରିୟା । ଇ୨ ।

ବର୍ତ୍ତମାନ ଅସମାପିକା । ଉ ।

ନିତ୍ୟ ବର୍ତ୍ତମାନ ଅସମାପିକା । ଉ୨ ।

ସମ୍ଭାବ୍ୟ ଅସମାପିକା । ଇଲେ ।

ସମାପ୍ତ ସମ୍ଭାବ୍ୟ ଅସମାପିକା । ଇଥିଲେ ।

ନିତ୍ୟ ସମ୍ଭାବ୍ୟ ଅସମାପିକା । ଉଥିଲେ ।

---

* ଏ ସ୍ଥଳରେ ସଂସ୍କୃତ ପଦ କୃତ, ଗତ, ଇତ୍ୟାଦି ।

## ସାଂଙ୍କିକ କୃଦନ୍ତ ।

| | | | |
|---|---|---|---|
| ପ୍ରଥମ ଶ୍ରେଣୀ । | ଇବାର । | ଇବାରେ । | ଇବାରୁ । |
| ଦ୍ୱିତୀୟ ଶ୍ରେଣୀ । | ଇଥିବାର । | ଇଥିବାରେ । | ଇଥିବାରୁ । |
| ତୃତୀୟ ଶ୍ରେଣୀ । | ଉଥିବାର । | ଉଥିବାରେ । | ଉଥିବାରୁ । |

ଏହି ସକଳ ପ୍ରତ୍ୟୟ ଦ୍ୱାରା ଏହି୨ ଧାତୁନୁସାରେ ଯାବନ୍ତ ପ୍ରକାର କ୍ରିୟାପଦ ଉତ୍ପନ୍ନ କରଇବ । ଭାଷାରେ ଅନେକ କ୍ରିୟାପଦ ସଂସ୍କୃତ ଧାତୁରୁ ମିଳଇ । ଯଥା, କରଇବାର, ଜାଣିବାର, ଧରଇବାର, ଜଣିବାର, ପିଇବାର । ଏ ନାନା କ୍ରିୟାପଦ ସଂସ୍କୃତ କୃ ଜ୍ଞା ଧୃ ଜ ପା । ଏପ୍ରକାର ଧାତୁରୁ ପ୍ରତପନ୍ନ ହୁଅନ୍ତି । ମାତ୍ର ସକଳ ଧାତୁ ତହିଁରୁ କ୨ କ୍ରିୟା ଅଦେଶ ହୁଏ ଇହା ଭାଷା ବ୍ୟାକରଣରେ ଲେଖିଲେ କେବଳ ଅନର୍ଥକ ଗୌରବ । ଅତଏବ କର, ଜାଣ, ଜଣ, ଧର, ପି, ଏ ଶବ୍ଦମାନଙ୍କୁ ଭାଷା ପଦର ଧାତୁ ବୋଧ କଲେ ପ୍ରୟୋଜନ ସିଦ୍ଧ ହେବ କାରଣ କି ପାଠକମାନେ ଅନାୟାସରେ ଦେଖି ପାରିବେ କି କର, ଏ ପଦ କି ସେ ଅଦେଶ୍ୟ ଧାତୁର ଦ୍ୱିତୀୟ ପୁରୁଷ ହୁଏ ଏଥିରେ କେବଳ ନାନା ଶ୍ରେଣୀର ବିଭକ୍ତି ସଂଯୋଗ କରିବାରୁ ତ୍ରିକାଳରେ କୃଦନ୍ତ ଇତ୍ୟାଦି ବିଶେଷ୨ ଉତ୍ପନ୍ନ ପ୍ରତପନ୍ନ ହୁଅନ୍ତି । ଯଥା, କର ଅଉ ଉଁ ଏଥିରେ କରୁଁ, କର ଇଥିଲୁଁ, ଏଥିରେ କରଇଥିଲୁଁ, କର ଇବୁଁ, ଏଥିରେ କରଇବୁଁ, ଇତ୍ୟାଦି । ଏହେତୁରୁ କର ପ୍ରଭୃତି ଶବ୍ଦକୁ କ୍ରିୟାପଦର ମୂଳ ଜାଣି ଭାଷା ଶବ୍ଦର ଧାତୁ ନିର୍ଦ୍ଦିଷ୍ଟ କରଅଛୁଁ । ତଦ୍ରୂପେ ଜାଣ, ଜଣ, ଧର, ପି, ଇତ୍ୟାଦି ଅଦେଶ୍ୟର ଦ୍ୱିତୀୟ ପୁରୁଷ ରୂପକୁ ଭାଷା ଧାତୁ ବୋଲି ଜାଣିବ ।

---

## ଚତୁର୍ଦ୍ଦଶ ପ୍ରକରଣ ।

## କ୍ରିୟାପଦର ରୂପ ।

### କର୍ତ୍ତୃବାଚ୍ୟ କ୍ରିୟା ।

ଧାତୁ —— ଲେଖ ।

### ଭୂତକାଳ ।

#### ପ୍ରଥମ ଶ୍ରେଣୀ ଅନଦ୍ୟତନ ଭୂତ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖିଲୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଲ । |
| ସେ ଲେଖିଲା* | ସେମାନେ | ଲେଖିଲେ । |

ଇତର ପ୍ରକାରେ—ମୁ ଲେଖିଲି—ତୁ ଲେଖିଲୁ—ସେ ଲେଖିଲା ।

#### ଦ୍ୱିତୀୟ ଶ୍ରେଣୀ ଦୂରସ୍ଥ ଭୂତକାଳ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖିଥିଲୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥିଲ । |
| ସେ ଲେଖିଥିଲା | ସେମାନେ | ଲେଖିଥିଲେ । |

ଇତର ପ୍ରକାର—ମୁ ଲେଖିଥିଲି—ତୁ ଲେଖିଥିଲୁ—ସେ ଲେଖିଥିଲା

---

*ମାନ୍ୟବ୍ୟକ୍ତି ବିଷୟରେ ପ୍ରୟୋଗ ହେଲେ ତିନ କାଳର ସକଳ ଶ୍ରେଣୀରେ ତୃତୀୟ ପୁରୁଷର ଏକବଚନ ତୃତୀୟ ପୁରୁଷର ବହୁବଚନ ସମାନ ହେବ । ଯଥା, ରାଜା ଆଜ୍ଞା ଦେଲେ । ସେହିରୂପେ ଦ୍ୱିତୀୟ ଶ୍ରେଣୀରେ ରାଜା ଆଜ୍ଞା ଦେଇଥିଲେ । ତୃତୀୟ ଶ୍ରେଣୀରେ ରାଜା ଆଜ୍ଞା ଦେଇଅଛନ୍ତି । ଚତୁର୍ଥ ଶ୍ରେଣୀରେ ରାଜା ଆଜ୍ଞା ଦେଇଥିବେ । ପଞ୍ଚମ ଶ୍ରେଣୀରେ ରାଜା ଆଜ୍ଞା ଦେଇଥାନ୍ତେ । ଷଷ୍ଠ ଶ୍ରେଣୀରେ ରାଜା ଆଜ୍ଞା ଦେଇଥାନ୍ତି । ଏହି ପ୍ରକାରେ ବର୍ତ୍ତମାନ ଭବିଷ୍ୟତ୍କାଳରେ ଅଦେଶ୍ୟ ଧାତୁରେ ତୃତୀୟ ପୁରୁଷ ମାନ୍ୟ ବ୍ୟକ୍ତି ହେଲେ କ୍ରିୟାପଦ ବହୁବଚନାନ୍ତ ହେବ ।

### ତୃତୀୟ ଶ୍ରେଣୀ ନିକଟ ଭୂତକାଳ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖିଅଛୁଁ ।* |
| ତୁମ୍ଭେ | ତୁମ୍ଭେମାନେ | ଲେଖିଅଛ । |
| ସେ ଲେଖିଅଛି | ସେମାନେ | ଲେଖିଅଛନ୍ତି । |

ଇତର ପ୍ରକାର—ମୁ ଲେଖିଅଛି—ତୁ ଲେଖିଅଛୁ—ସେ ଲେଖିଅଛି

### ଚତୁର୍ଥ ଶ୍ରେଣୀ ଅନୁମାନିକ ଭୂତ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖିଥିବୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥିବ । |
| ସେ ଲେଖିଥିବ | ସେମାନେ | ଲେଖିଥିବେ । |

ଇତର ପ୍ରକାର—ମୁ ଲେଖିଥିବି—ତୁ ଲେଖିଥିବୁ—ସେ ଲେଖିଥିବ ।

### ପଞ୍ଚମ ଶ୍ରେଣୀ ସମ୍ଭାବ୍ୟ ଭୂତ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖିଥାନ୍ତୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥାନ୍ତ । |
| ସେ ଲେଖିଥାନ୍ତା | ସେମାନେ | ଲେଖିଥାନ୍ତେ । |

ଇତର—ମୁ ଲେଖିଥାନ୍ତି—ତୁ ଲେଖିଥାନ୍ତୁ—ସେ ଲେଖିଥାନ୍ତା ।

### ଷଷ୍ଠ ଶ୍ରେଣୀ ସମାପ୍ତ ଭୂତ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖିଥାଉଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥାଅ । |
| ସେ ଲେଖିଥାଏ | ସେମାନେ | ଲେଖିଥାନ୍ତି । |

ଇତର—ମୁଁ ଲେଖିଥାଏଁ—ତୁ ଲେଖିଥାଉ—ସେ ଲେଖିଥାଏ ।

---

* ଭାଷା ବ୍ୟବହାରରେ ଲେଖିଛୁଁ, ଲେଖିଛ, ଲେଖିଛି, ଲେଖିଛନ୍ତି, ଏରୂପ ସଂକ୍ଷେପରେ ମଧ୍ୟ ବୋଲି ଯାଏ ।

## ବର୍ତ୍ତମାନକାଳ ।

### ପ୍ରଥମ ଶ୍ରେଣୀ ଅନଷ୍ଠିତ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖ । |
| ସେ ଲେଖେ | ସେମାନେ | ଲେଖନ୍ତି । |

ଇତର ପ୍ରକାର—ମୁ ଲେଖେଁ—ତୁ ଲେଖୁ—ସେ ଲେଖେ ।

### ଦ୍ୱିତୀୟ ଶ୍ରେଣୀ ଦୂରସ୍ଥ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଥିଲୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥିଲ । |
| ସେ ଲେଖୁଥିଲା | ସେମାନେ | ଲେଖୁଥିଲେ । |

ଇତର—ମୁ ଲେଖୁଥିଲି—ତୁ ଲେଖୁଥିଲୁ—ସେ ଲେଖୁଥିଲା ।

### ତୃତୀୟ ଶ୍ରେଣୀ ନିକଟ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଅଛୁଁ* । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଅଛ । |
| ସେ ଲେଖୁଅଛି | ସେମାନେ | ଲେଖୁଅଛନ୍ତି । |

ଇତର—ମୁ ଲେଖୁଅଛି—ତୁ ଲେଖୁଅଛୁ—ସେ ଲେଖୁଅଛି ।

### ଚତୁର୍ଥ ଶ୍ରେଣୀ ଅନୁମାନକ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଥିବୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥିବ । |
| ସେ ଲେଖୁଥିବ | ସେମାନେ | ଲେଖୁଥିବେ । |

ଇତର—ମୁ ଲେଖୁଥିବି—ତୁ ଲେଖୁଥିବୁ—ସେ ଲେଖୁଥିବ ।

---

* ସଂକ୍ଷେପରେ ଲେଖୁଛୁଁ, ଲେଖୁଛ, ଲେଖୁଛି, ଲେଖୁଛନ୍ତି ।

ପଞ୍ଚମ ଶ୍ରେଣୀ ସମ୍ଭାବ୍ୟ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଥାନ୍ତୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥାନ୍ତ । |
| ସେ ଲେଖୁଥାନ୍ତା | ସେମାନେ | ଲେଖୁଥାନ୍ତେ । |

ଇତର—ମୁ ଲେଖୁଥାନ୍ତା—ତୁ ଲେଖୁଥାନ୍ତୁ—ସେ ଲେଖୁଥାନ୍ତା ।

ଷଷ୍ଠ ଶ୍ରେଣୀ ସମାପ୍ତ ବର୍ତ୍ତମାନ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖୁଥାଉଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥାଅ । |
| ସେ ଲେଖୁଥାଏ | ସେମାନେ | ଲେଖୁଥାନ୍ତି । |

ଇତର—ମୁ ଲେଖୁଥାଇଁ—ତୁ ଲେଖୁଥାଉ—ସେ ଲେଖୁଥାଏ ।

ଭବିଷ୍ୟତ୍କାଳ ।

ପ୍ରଥମ ଶ୍ରେଣୀ ଶୁଦ୍ଧ ଭବିଷ୍ୟତ୍* ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖିବୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିବ । |
| ସେ ଲେଖିବ | ସେମାନେ | ଲେଖିବେ । |

ଇତର—ମୁ ଲେଖିବ—ତୁ ଲେଖିବୁ—ସେ ଲେଖିବ ।

ଦ୍ୱିତୀୟ ଶ୍ରେଣୀ ସମାପ୍ତ ଭବିଷ୍ୟତ୍ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖିଥିବୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥିବ । |
| ସେ ଲେଖିଥିବ | ସେମାନେ | ଲେଖିଥିବେ । |

ଇତର—ମୁ ଲେଖିଥିବ—ତୁ ଲେଖିଥିବୁ—ସେ ଲେଖିଥିବ ।

---

* ଏହି ଭବିଷ୍ୟତ୍କାଳର ଅନ୍ୟ ତିନ ଶ୍ରେଣୀରେ ପ୍ରଥମ ପୁରୁଷର 'ଉ' ପ୍ରତ୍ୟୟ ବଦଳରେ ଅକାର ମଧ୍ୟ ଆଦେଶ ହୁଏ । ଯଥା, ପ୍ରଥମ ଶ୍ରେଣୀରେ 'କରବା' ଦ୍ୱିତୀୟ ଶ୍ରେଣୀରେ 'କରଥିବା' ତୃତୀୟ ଶ୍ରେଣୀରେ 'କର୍‌ଥିବା' ।

ତୃତୀୟ ଶ୍ରେଣୀ ନିତ୍ୟ ଭବିଷ୍ୟତ୍ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖୁଥିବୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥିବ । |
| ସେ ଲେଖୁଥିବ | ସେମାନେ | ଲେଖୁଥିବେ । |

ଇତର—ମୁଁ ଲେଖୁଥିବି—ତୁ ଲେଖୁଥିବୁ—ସେ ଲେଖୁଥିବ ।

ଚତୁର୍ଥ ଶ୍ରେଣୀ ସମ୍ଭାବ୍ୟ ଭବିଷ୍ୟତ୍ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖନ୍ତୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖନ୍ତ । |
| ସେ ଲେଖନ୍ତା | ସେମାନେ | ଲେଖନ୍ତେ । |

ଇତର—ମୁଁ ଲେଖନ୍ତି—ତୁ ଲେଖନ୍ତୁ—ସେ ଲେଖନ୍ତା ।

ଆଦେଶ୍ୟ ଅନୁମତ୍ୟର୍ଥ ଧାତୁ ।

ପ୍ରଥମ ଶ୍ରେଣୀ ଶୁଦ୍ଧ ଆଦେଶ୍ୟ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖ । |
| ସେ ଲେଖୁ | ସେମାନେ | ଲେଖନ୍ତୁ । |

ଇତର—ମୁଁ ଲେଖଇଁ କିମ୍ବା ଲେଖେଁ—ତୁ ଲେଖ—ସେ ଲେଖୁ ।

ଦ୍ୱିତୀୟ ଶ୍ରେଣୀ ସମାପ୍ତ ଆଦେଶ୍ୟ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖିଥାଉଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖିଥାଅ । |
| ସେ ଲେଖିଥାଉ | ସେମାନେ | ଲେଖିଥାଉନ୍ତୁ । |

ଇତର—ମୁଁ ଲେଖିଥାଏଁ—ତୁ ଲେଖିଥା—ସେ ଲେଖିଥାଉ ।

ତୃତୀୟ ଶ୍ରେଣୀ ନିତ୍ୟ ଆଦେଶ୍ୟ ।

| | | |
|---|---|---|
| ଆମ୍ଭେ | ଆମ୍ଭେମାନେ | ଲେଖୁଥାଉଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖୁଥାଅ । |
| ସେ ଲେଖୁଥାଉ | ସେମାନେ | ଲେଖୁଥାଉନ୍ତୁ । |

ଇତର—ମୁଁ ଲେଖୁଥାଏଁ—ତୁ ଲେଖୁଥା—ସେ ଲେଖୁଥାଉ ।

## କୃଦନ୍ତ ଧାତୁ ।

୧ ନିମିତ୍ତାର୍ଥ କୃଦନ୍ତ . . . . . . . . ଲେଖିବାକୁ ।
୨ ସମାପ୍ତ କୃଦନ୍ତ . . . . . . . . . ଲେଖିତ ବା ଲେଖା ।
୩ ଅସମାପିକା କ୍ରିୟା . . . . . . . . ଲେଖି ।*
୪ ବର୍ତ୍ତମାନ ଅସମାପିକା କ୍ରିୟା . . . ଲେଖୁ ।†
୫ ସମ୍ଭାବ୍ୟ ଅସମାପିକା . . . . . ଲେଖିଲେ । ଲେଖିଥିଲେ । ଲେଖୁଥିଲେ ।

## ସାଂଜ୍ଞିକ କୃଦନ୍ତ ।

ପ୍ରଥମ ଶ୍ରେଣୀ । ଲେଖିବାର । ଲେଖିବାରେ । ଲେଖିବାରୁ ।
ଦ୍ୱିତୀୟ ଶ୍ରେଣୀ । ଲେଖିଥିବାର । ଲେଖିଥିବାରେ । ଲେଖିଥିବାରୁ ।
ତୃତୀୟ ଶ୍ରେଣୀ । ଲେଖୁଥିବାର । ଲେଖୁଥିବାରେ । ଲେଖୁଥିବାରୁ ।

ଉପରେ କର୍ତ୍ତୃବାଚ୍ୟ କ୍ରିୟା ବିସ୍ତାର କରି ଲେଖିଅଛୁଁ । କର୍ମବାଚ୍ୟ ଯେଉଂ ଅନ୍ୟ ପ୍ରକାର କ୍ରିୟା ତାହା ରୂଷା ଯା, ହୋ ଧାତୁ ସଂଯୋଗାଧୀନ ରୂପ ହୁଏ । ଯଥା ।

## କର୍ମବାଚ୍ୟ କ୍ରିୟା ।

ଧାତୁ ——— ଲେଖ ।

## ଭୂତକାଳ ।

## ପ୍ରଥମ ଶ୍ରେଣୀ ଅନଶ୍ଚିତ ଭୂତକାଳ ।

| | | |
|---|---|---|
| ଅମ୍ଭେ | ଅମ୍ଭେମାନେ | ଲେଖାଗଲୁଁ । |
| ତୁମ୍ଭେ | ତୁମ୍ଭେମାନେ | ଲେଖାଗଲ । |
| ସେ ଲେଖାଗଲା | ସେମାନେ | ଲେଖାଗଲେ । |

ଇତର—ମୁ ଲେଖାଗଲି—ତୁ ଲେଖାଗଲୁ—ସେ ଲେଖାଗଲା ।

---

* ଲେଖି ଏ ନିତ୍ୟ ଅସମାପିକା କ୍ରିୟା ।
† ଲେଖୁ ଏ ନିତ୍ୟ ବର୍ତ୍ତମାନ ଅସମାପିକା କ୍ରିୟା ।

ଦ୍ୱିତୀୟ ଶ୍ରେଣୀ ଦୂରସ୍ଥ ଭୂତକାଳ ।

ଅମ୍ଭେ ଅମ୍ଭେମାନେ ଲେଖାଯାଇଥିଲୁଁ ।
ତୁମ୍ଭେ ତୁମ୍ଭେମାନେ ଲେଖାଯାଇଥିଲ ।
ସେ ଲେଖାଯାଇଥିଲା ସେମାନେ ଲେଖାଯାଇଥିଲେ ।

ଇତର ପ୍ରକାର—ମୁ ଲେଖାଯାଇଥିଲି—ତୁ ଲେଖାଯାଇ-
ଥିଲୁ—ସେ ଲେଖାଯାଇଥିଲା ।

ଏହିରୂପେ କର୍ମବାଚ୍ୟକ୍ରିୟାର ଭୂତ, ବର୍ତ୍ତମାନ, ଭବିଷ୍ୟତ୍, ତ୍ରି-
କାଳରୂପେ ପୂର୍ବ ଲେଖିତ କର୍ତ୍ତୃବାଚ୍ୟ କ୍ରିୟାର ବିଭକ୍ତି ଧାରା ପ୍ରବ-
ର୍ତ୍ତିବ । କେବଳ 'ଯା' ଯେ ଏଠାରେ ସହକାରି କ୍ରିୟାପଦ ସେ
ବିଭକ୍ତି ଅଗରେ ନିକ୍ଷେପ ହୁଏ ।

ଏ କର୍ମବାଚ୍ୟକ୍ରିୟାର ରୂପ ଏହି ପ୍ରକାର ମଧ୍ୟ ହୁଏ । ଯଥା,

ପ୍ରଥମ ଶ୍ରେଣୀ ଭୂତକାଳ ।

ଅମ୍ଭେ ଅମ୍ଭେମାନେ ଲେଖିତହେଲୁଁ ।
ତୁମ୍ଭେ ତୁମ୍ଭେମାନେ ଲେଖିତହେଲ ।
ସେ ଲେଖିତ ହେଲା ସେମାନେ ଲେଖିତହେଲେ ।

ଏଠାରେ ଉଦାହରଣସ୍ୱରୂପ କେବଳ ଗୋଟିଏ କ୍ରିୟା ତ୍ରିକାଳ-
ରେ ଯେଉଂ ନାନା ପ୍ରକାରେ ରୂପାନ୍ତର ହୁଏ ତାହା ବର୍ଣ୍ଣିତା
ହୋଇଅଛି । ମାତ୍ର ଅବଶ୍ୟକ ଏହି କ ପଜ୍ୟ୬ ଧାତୁ ଲେଖ ଧାତୁ
ଯେରୂପେ ସାଧନ ହୋଇଅଛି ସେହିରୂପେ କରିବ । ମାର, କର, ଧର,
ପଢ, ଶିଖ, ଖା, ଇତ୍ୟାଦି ଅନେକ କ୍ରିୟାପଦ ଶିଷ୍ୟେ ସାଧନ କରିବୁ ।

ଭାଷାରେ କେତେକ କ୍ରିୟାପଦ ସଂଜ୍ଞା ବିଶେଷ୍ୟଠାରୁ କରି
ଧାତୁ ଯୋଗ ଦ୍ୱାରା ମିଳନ୍ତି । ଯଥା, ପ୍ରେମରୁ ପ୍ରେମ କର । ଯୁଦ୍ଧରୁ
ଯୁଦ୍ଧ କର । ଜୟରୁ ଜୟ କର । ଇତ୍ୟାଦି ଏହି ପ୍ରକାର ଅନେକ ।
ଏହି ସମସ୍ତ ପୂର୍ବୋକ୍ତ ଲେଖ ଧାତୁ ସମାନ ସାଧନ ହେବ ।

ମାନ୍ୟସ୍ଥଳରେ ସାଧାରଣ ନିୟମ ଅନ୍ୟଥା ହୁଏ । ଯଥା, ଆପଣ କରନ୍ତୁ ଏଠାରେ ଆପଣ ମଧ୍ୟମ ପୁରୁଷ ଏବଂ କ୍ରିୟା ତୃତୀୟ ବହୁବଚନାନ୍ତ ପୁରୁଷରେ ପ୍ରୟୋଗ ହୋଇଅଛି । ଆପଣ କରିବା ହେବ ବା କରିବା ହେଉନ୍ତୁ ଇତ୍ୟାଦି ପ୍ରକାରେ ମଧ୍ୟ ଗୌରବ ସ୍ଥଳରେ କ୍ରିୟାର ବୈପରୀତ୍ୟ ହୁଏ ।

---

## ପଞ୍ଚଦଶ ପ୍ରକରଣ ।

### ପ୍ରେରଣାର୍ଥ କ୍ରିୟା ।

ପ୍ରେରଣାର୍ଥ କ୍ରିୟା ଏହି ପ୍ରକାରେ ହୁଏ । ଯେବେ ଧାତୁ ହଲନ୍ତ କିମ୍ବା ଅକାରାନ୍ତ ହୋଇ ଥାଏ ତେବେ ଆକାର ପ୍ରୟୋଗରେ ପ୍ରେରଣାର୍ଥ କ୍ରିୟା ହେବ । ଯଥା, ଲେଖ, ଲେଖା । ପଢ, ପଢା । ଧର, ଧରା । ଆଦ୍ୟ ଅକ୍ଷର ଆକାରାନ୍ତ ହୋଇଥିଲେ ପ୍ରେରଣାର୍ଥରେ ସେ ଆକାର ଲୋପ ହୁଏ । ଯଥା, ହାଣ, ହଣା । ଡାକ, ଡକା । କାନ୍ଦ, କନ୍ଦା ଇତ୍ୟାଦି । ଧାତୁ ଆକାରାନ୍ତ ହେଲେ ଉଆ ପ୍ରୟୋଗରେ ପ୍ରେରଣାର୍ଥ କ୍ରିୟା ହେବ । ଯଥା, ଖା, ଖୁଆ । ଇକାରାନ୍ତ ଧାତୁ ପ୍ରେରଣାର୍ଥେ ଆ ପ୍ରୟୋଗରେ ପ୍ରତିପନ୍ନ ହୁଏ । ଯଥା, ପି, ପିଆ । ଜି, ଜିଆ । ଏକାରାନ୍ତ ଧାତୁ ୟା ଦ୍ୱାରା ମଧ୍ୟ ପ୍ରେରଣାର୍ଥକ ହୁଏ ଯଥା, ଦେ, ଦିୟା ।

କି ଅକର୍ମକ କି ସକର୍ମକ କି ପ୍ରେରଣାର୍ଥକ ସର୍ବପ୍ରକାର କ୍ରିୟା ପଦ ଏକ ଧାତ୍ୱନୁସାରେ ବିଭକ୍ତି ଗ୍ରହଣ କରି ସାଧନ ହୁଅନ୍ତି । ଅତଏବ ସେ ବିଷୟରେ ଏଠାରେ ଅଧିକ ବାହୁଲ୍ୟରୂପେ ଲେଖିବାର ପ୍ରୟୋଜନ ନାହିଁ ।

ଯା ଧାତୁର ପ୍ରେରଣ ଅର୍ଥରେ ରୂପାନ୍ତର ନାହିଁ । ସେଠାରେ ପଠାଇଥିଲି, ବା ପଠାଇଲି ଇତ୍ୟାଦି ରୂପ ହୁଏ । ହୋ, ଏବଂ ଯା ଏଦୁଇ ଧାତୁର ରୂପରେ ପରିବର୍ତ୍ତନ ହୁଏ । ଯଥା ।

## ଧାତୁ ——— ହୋ ।

### ଭୂତକାଳ ।

### ପ୍ରଥମ ଶ୍ରେଣୀ ଅନଷ୍ଟିତଭୂତ ।

ଅମ୍ଭେ ହୋଇଲୁଁ, ତୁମ୍ଭେ ହୋଇଲ, ସେ ହୋଇଲା, ସେମାନେ ହୋଇଲେ । ମାତ୍ର ଭାଷା ବ୍ୟବହାରରେ ମଧ୍ୟସ୍ଥିତ ଇକାର ଲୋପ ହୁଏ । ଯଥା, ହେଲୁଁ, ହେଲ, ହେଲା, କିମ୍ବା ହେଲେ ପ୍ରୟୋଗ ହୁଏ । ପୁଣି ପ୍ରାୟ ଅନ୍ୟ ସବୁ ଶ୍ରେଣୀରେ ହେ ବ୍ୟବହାର ହୁଏ । ଯଥା, ଶୁଦ୍ଧ ଅଦେଶ୍ୟ ହୋଉଁ ବା ହେଉଁ । ହୋଅ ବା ହୁଅ । ହୋଉ, ହୋଉନ୍ତୁ, କିମ୍ବା ହେଉ, ହେଉନ୍ତୁ । କୃଦନ୍ତ ହୋଇବାକୁ କିମ୍ବା ହେବାକୁ । ସମାପ୍ତ କୃଦନ୍ତ ହୋଇଲା ବା ହେଲା । ବର୍ତ୍ତମାନ ଅସମାପିକା ହୋଉ, ବା ହେଉ ଏବଂ ହୋଉଁ, ବା ହେଉଁ । ସମ୍ଭାବ୍ୟ କୃଦନ୍ତ ହୋଇଥିଲେ, ବା ହେଇଥିଲେ । ହୋଉଥିଲେ, ବା ହେଉଥିଲେ । ସାଂଙ୍କିକ କ୍ରିୟାର ହୋଇବାର, ହୋଇବାରୁ, ହୋଇବାରେ । ଅଥବା ହେବାର, ହେବାରୁ, ହେବାରେ ।

ଯା କ୍ରିୟା ପ୍ରଥମ ଅର୍ଥାତ୍ ଅନଷ୍ଟିତ ଭୂତକାଳରେ ଗ ହୁଏ । ଯଥା, ଗଲୁଁ, ଗଲ, ଗଲା, ବା ଗଲେ । ତହିଁର ସମାପ୍ତ କ୍ରିୟା ଗତ ବା ଗଲା । ଏବଂ ସମ୍ଭାବ୍ୟ କୃଦନ୍ତ ଗଲେ, ଯାଇଥିଲେ, ଯାଉଥିଲେ ।

ଏବଂ କର ଧାତୁ ପ୍ରଥମ ଭୂତ ଶ୍ରେଣୀରେ କରିଲୁଁ ପରିବର୍ତ୍ତନରେ କଲୁଁ ଏହି ପ୍ରକାର ପ୍ରୟୋଗ ହୁଏ । ଅଉ ସମାପ୍ତ କୃଦନ୍ତ କୃତ ବା କଲା ।

ଲେଖିବାକୁ ଅର୍ଥାତ୍ ପ୍ରଥମ କୃଦନ୍ତ କ୍ରିୟା ହୋ ଧାତୁ କ୍ରିୟା ଯୋଗରେ ଅବଶ୍ୟକତା ଜ୍ଞାତ କରାଏ । ଯଥା, ଆମ୍ଭର ଲେଖିବାକୁ ହେବ ଅର୍ଥାତ୍ ଲେଖିବାର ଅବଶ୍ୟକ ଅଟେ କିମ୍ବା ସୁଖ୍ୟାତ ପାଇ-

ବାର ବାଞ୍ଛା କଲେ ବିଦ୍ୟା ଶିଖିବାକୁ ହେବ ଅର୍ଥାତ୍ ନ ଶିଖିଲେ ନୋହିବ । ଏହିରୂପେ ଅନ୍ୟ ସକଳ କ୍ରିୟାପଦର କୃଦନ୍ତ ଅର୍ଥ ବିଶେଷ ଜ୍ଞାତ କରାଏ । ମାତ୍ର ଏହିରୂପ ସ୍ଥଳରେ ବିଶେଷ୍ୟ ପଦର ଅବଶ୍ୟ ଷଷ୍ଠୀ ହେବ ।

---

## ଷୋଡଶ ପ୍ରକରଣ ।

### ଅଭାବାର୍ଥ କ୍ରିୟାର ପ୍ରସଙ୍ଗ ।

ନ, ନାହିଁ ପ୍ରୟୋଗରେ ଅଭାବାର୍ଥ କ୍ରିୟା ହୁଏ । ଯଥା, ଭୂତକାଳର ପ୍ରଥମ ଶ୍ରେଣୀ ଅମ୍ଭେ ଲେଖିଲୁ ନାହିଁ । ଦ୍ୱିତୀୟ ଶ୍ରେଣୀ ଅମ୍ଭେ ଲେଖି ନ ଥିଲୁ । ମାତ୍ର ଭୂତକାଳ ବର୍ତ୍ତମାନ କାଳର ତୃତୀୟ ଶ୍ରେଣୀ ଏହିରୂପେ ହୁଏ । ଯଥା, ଅମ୍ଭେ ଲେଖି ନାହୁଁ, ତୁମ୍ଭେ ଲେଖି ନାହଁ, ସେ ଲେଖି ନାହିଁ କିମ୍ବା ସେମାନେ ଲେଖି ନାହାନ୍ତି, ଏବଂ ଅମ୍ଭେ ଲେଖୁ ନାହୁଁ, ତୁମ୍ଭେ ଲେଖୁ ନାହଁ, ସେ ଲେଖୁ ନାହିଁ କି ସେମାନେ ଲେଖୁ ନାହାନ୍ତି । ଇତର ପ୍ରକାର ମୁ ଲେଖି କି ଲେଖୁ ନାହିଁ ଇତ୍ୟାଦି ।

ନ ଏବଂ ହୋ ଧାତୁ କ୍ରିୟା ଯୋଗରେ ନୋହ କିମ୍ବା ନୁହ ହୁଏ । ଯଥା, ନୋହିଲୁଁ, ନୋହିଲ, ନୋହିଲା କି ନୋହିଲେ । ପୁନର୍ବାର ବର୍ତ୍ତମାନ କାଳର ପ୍ରଥମ ଶ୍ରେଣୀରେ ନୋହୁଁ କି ନୁହୁଁ, ନୋହ କି ନୁହ, ନୋହେ କି ନୁହେ । ଅଥବା ସେମାନେ ନୋହନ୍ତି କି ନୁହନ୍ତି ।

ଅ କି ଅସ କ୍ରିୟା ଭୂତର ପ୍ରଥମ ଶ୍ରେଣୀରେ ଦୁଇ ପ୍ରକାର ହୁଏ । ଯଥା, ଅସିଲୁଁ ବା ଆଇଲୁଁ । ଏବଂ ଅନ୍ୟ ସ୍ଥଳରେ ସକାର ଲୋପ ହୁଏ । ଯଥା, ଅସିଥିଲୁଁ ବା ଆଇଥିଲୁଁ । ଅସୁଥିଲୁଁ ବା ଆଉଥିଲୁଁ । ମାତ୍ର ସକାର ଲୋପ ସ୍ଥଳରେ ନୀଚ ଭାଷା ବୋଲି ଜାଣିବ ।

ଅସ କ୍ରିୟା ଅନ୍ୟକ୍ରିୟା ସଙ୍ଗେ ପ୍ରୟୋଗ ହୋଇ କ୍ରମିକ କମ୍ମା ପରମ୍ପରାଗତ ଯାଏ ଅର୍ଥକୁ ବୁଝାଏ । ଯଥା, ଆମ୍ଭ ପୂର୍ବପୁରୁଷେ ଏ ଭୂମିକ ଭୋଗଦଖଲ କର ଅସୁଅଛନ୍ତ ଅର୍ଥାତ୍ ଚିରକାଳର ଅଦ୍ୟାବଧି ଭୋଗ କରୁଅଛନ୍ତ ।

---

## ସପ୍ତଦଶ ପ୍ରକରଣ ।

### ଅଥ ବିଶେଷଣୀୟ ବିଶେଷଣ ।

ବିଶେଷଣୀୟ ବିଶେଷଣ ଏହ, ଯେ କ୍ରିୟାପଦ ଅଗରେ ଥାଇ ସେଇ କ୍ରିୟାପଦର କାଳ ଇତ୍ୟାଦ ନଚେତ୍ ଗୁଣାତ୍ମକ ବିଶେଷଣର ଅଗେ ଥାଇ ସେଥିର ଗୁଣକୁ ବିଶେଷ କରେ ତାହାର ନାମ ବିଶେଷଣୀୟ ବିଶେଷଣ । ଯଥା, ଶୀଘ୍ର ଅସ । ଏଠାରେ ଶୀଘ୍ର ପଦ ବିଶେଷଣୀୟ ବିଶେଷଣ ଏବଂ ଅସ କ୍ରିୟାର ଅର୍ଥକୁ ବିଶେଷ କରଇ । ଧୀରେ ନ ଅସି ଶୀଘ୍ର ଅସ । ପୁନଶ୍ଚ ଏହକ୍ଷଣି ଅସ ଏ ସ୍ଥଳରେ ଏହକ୍ଷଣି ବିଶେଷଣୀୟ ବିଶେଷଣ ଏବଂ ଅସିବା କ୍ରିୟାର କାଳ ସମ୍ବନ୍ଧ ରଖେ । ତଦ୍ବତ୍ ଅତ ସୁନ୍ଦର ପୁଷ୍ପ ଏଠାରେ ଅତ ବିଶେଷଣୀୟ ବିଶେଷଣ ଏବଂ ଗୁଣାତ୍ମକ ଶବ୍ଦ ଅର୍ଥାତ୍ ସୁନ୍ଦର ପଦର ଅଗ୍ରବର୍ତ୍ତୀ ହୋଇ ଗୁଣକୁ ବିଶେଷରୂପେ କହେ ।

କଦାଚିତ୍ ଦୁଇ ବିଶେଷଣୀୟ ବିଶେଷଣ ଏକତ୍ର ଅଦେଶ ହୁଅନ୍ତ । ଯଥା, ଅତଶୀଘ୍ର ଅସ । ଅତ୍ୟନ୍ତ ଦୂରରେ ସେ ଦେଶ ଇତ୍ତ । ସବୁ ବିଶେଷଣୀୟ ବିଶେଷଣ ଅବ୍ୟୟ ଅର୍ଥାତ୍ କୌଣସି ବିଭକ୍ତି ଦ୍ୱାରା ରୂପାନ୍ତର ହୋଇ ନ ପାରନ୍ତ ।

ବିଶେଷଣୀୟ ବିଶେଷଣ ନାନାବିଧ ଅର୍ଥାତ୍ କାଳସମ୍ବନ୍ଧୀୟ, ସ୍ଥାନସମ୍ବନ୍ଧୀୟ, ଅଉ ଗୁଣସମ୍ବନ୍ଧୀୟ, ସଂଖ୍ୟାସମ୍ବନ୍ଧୀୟ, କର୍ମସମ୍ବନ୍ଧୀୟ, ଭାବସମ୍ବନ୍ଧୀୟ ଇତ୍ୟାଦ ଅନେକ ପ୍ରକାର ।

କାଳସମ୍ବନ୍ଧୀୟ ବିଶେଷଣ ଏହି । ଏବେ, ତେବେ, କେବେ, ଯେବେ, କଲ୍ୟ, ଅଦ୍ୟ ଅର୍ଥାତ୍ ଭାଷାରେ କାଲି, ଆଜି, ସଦା, ଅନବରତ, ବର୍ତ୍ତମାନ, ସମ୍ପ୍ରତି, କଦାଚିତ୍, କଦାଚନ, ଚିର, ଦିନରେ, ରାତ୍ରିରେ, ସକାଳେ, ପ୍ରାତଃକାଳେ, ପୂର୍ବେ, ପଶ୍ଚାତ୍, କଦାଚ, ଉତ୍ତରେ, ପ୍ରଭାତେ, ପୁନର୍ବାର, ପୁନରପି, ପୁଣି, ନିତ୍ୟ, ନିରନ୍ତର, ଯାବତ୍, ତାବତ୍, ସର୍ବଦା ଇତ୍ୟାଦି ।

ସ୍ଥାନବାଚକ ବିଶେଷଣୀୟ ବିଶେଷଣ ଏହି । ଏଠାରେ, ସେଠାରେ, ଯେଉଁଠାରେ ଇତ୍ୟାଦି ମଧ୍ୟ, ଭିତରେ, ସର୍ବତ୍ର, ବାହାରେ, ଉପରେ, ଊର୍ଦ୍ଧ୍ୱରେ, ତଳେ, ନିକଟେ, ଦୂରେ, ସମ୍ମୁଖରେ, ସାକ୍ଷାତରେ । ଅଗ୍ରେ, ଆଗେ, ଗୋଚରରେ, ପ୍ରତ୍ୟକ୍ଷେ, ଅନ୍ତର ଇତ୍ୟାଦି ।

ଗୁଣାଦିସମ୍ବନ୍ଧବାଚକ ବିଶେଷଣୀୟ ବିଶେଷଣ ଏହି । ଅନୁସାରେ, ଅତି, ଅତିଶୟ, ଏମନ୍ତେ, ଯେମନ୍ତେ, କ୍ରମେ, ଯେତେ, କେତେ, ଦୈବାତ୍, ପରସ୍ପର, ବୃଥା ଇତ୍ୟାଦି । ଏବଂ ପ୍ରଥମେ, ଦ୍ୱିତୀୟରେ, ତୃତୀୟରେ ଇତ୍ୟାଦି । ବାରେ, ଏକଧା, ଦ୍ୱିଧା, ନାନା, ପୁନଃ, ପୁନର୍ବାର, ବାରମ୍ବାର, ପୃଥକ୍, ଶୀଘ୍ର, ତ୍ୱରିତ, ସତ୍ୱର, ନିତାନ୍ତ, ହଁ, ହାଁ, ନ, ନା, ନାହିଁ, ଇତ୍ୟାଦି ଅନେକ ।

ଏହି ସକଳ ବିଶେଷଣୀୟ ଶବ୍ଦ ସାଧାରଣରୂପେ ଅବ୍ୟୟ ଏବଂ ତନ୍ମଧ୍ୟରୁ କେତେକ ସଂଜ୍ଞା କିମ୍ବା ଗୁଣାତ୍ମକ ବିଶେଷଣ ବୋଧ ହୋଇ ପାରନ୍ତି । ଯଥା, ପୂର୍ବରେ ଇହାର ଏକାର ଲୋପ ହେଲେ ହୁଏ । ଯଥା, ପୂର୍ବର ଇତିହାସ । ସେହିରୂପ ଆଜିର ସମ୍ବାଦ, ଏ୨ସ୍ଥଳରେ ପୂର୍ବ ଆଜି ସଂଜ୍ଞା ବିଶେଷ୍ୟ ପ୍ରାପ୍ତ ହୋଇ ଷଷ୍ଠୀର ରେଫ ଆଦେଶ ହୁଏ । ସେହିରୂପେ ଏଠା ମନୁଷ୍ୟ, ବନ ମଧ୍ୟରେ, ରାଜାଙ୍କ ନିକଟକୁ ଇତ୍ୟାଦି ସ୍ଥାନରେ ବିଶେଷଣୀୟ ବିଶେଷଣ ରୂପାନ୍ତର ହୋଇ ସଂଜ୍ଞାର୍ଥ ଅବା ଗୁଣାତ୍ମକ ବିଶେଷଣାର୍ଥ ପ୍ରତିପନ୍ନ କରେ ।

ହେଁବ, ମଧ୍ୟ, ସୁଦ୍ଧା ଏହି୨ ପରବର୍ତ୍ତୀ ଶବ୍ଦ ବିଶେଷଣୀୟ ବିଶେ-

ଷଣରେ ସଂଯୋଗ ହୋଇ ନାନା ପ୍ରକାର ଅର୍ଥକୁ ବୁଝାନ୍ତି । ଯଥା, କେବେକେବେଁ । କେଉଁଠି । ଢେବେସୁଦ୍ଧା ଇତ୍ୟାଦି ।

---

## ଅଷ୍ଟାଦଶ ପ୍ରକରଣ ।

### ଯୌଗିକ ବିଶେଷଣ ।

ଯୌଗିକ ବିଶେଷଣ ତାକୁ ବୋଲି ଯାଏ ଯାହା ଦ୍ୱାରା ପରସ୍ପର ସମ୍ବନ୍ଧୀୟ ବାକ୍ୟ ସଂଯୋଗ ହୋଇ ଏକତ୍ର ରଚନା ହୁଅନ୍ତି ।

ଯୌଗିକ ବିଶେଷଣ ଦୁଇ ପ୍ରକାର । ପ୍ରଥମେ ଯାହା ଦ୍ୱାରା ଦୁଇ ପଦ କିମ୍ବା ଦୁଇ ସମ୍ବନ୍ଧୀୟ ବାକ୍ୟ ଏକତ୍ର କରା ଯାନ୍ତି ତାହାର ନାମ 'ସଂଯୋଜକ' । ଏବଂ ଦ୍ୱିତୀୟରେ ଯାହା ଦ୍ୱାରା ଦୁଇ ପଦ ବିଭିନ୍ନ କରା ଯାନ୍ତି ତାହାର ନାମ 'ବିଚ୍ଛେଦକ' ।

ଆଉ, ଅଧିକ, ଏବଂ, ଓ, ପୁଣି, ମଧ୍ୟ, ବରଂ, ଇତ୍ୟାଦିକୁ ସଂଯୋଜକ ବିଶେଷଣ କହୁଁ, ହେତୁ କି ଯେଉଁ ଦୁଇ ଶବ୍ଦ ମଧ୍ୟରେ ଥାନ୍ତି ସେ ଦୁଇ ଶବ୍ଦକୁ ଏକତ୍ର କରି ଅର୍ଥ ବୁଝାନ୍ତି ଏବଂ ବହୁବଚନାନ୍ତ କ୍ରିୟା ଅନୁସରନ୍ତି । ଯଥା, ରାମ ଆଉ ଗୋବିନ୍ଦ ଯାଉଅଛନ୍ତି । କିମ୍ବା ରାମ ଏବଂ ଗୋବିନ୍ଦ ଯାଉଅଛନ୍ତି ଇତ୍ୟାଦି ।

କିମ୍ବା, ଅବା, ଅଥବା, କି, ନତୁବା, ଇତ୍ୟାଦି ଏମାନେ ବିଚ୍ଛେଦକ, କାରଣ କି ଏମାନେ ଯେଉଁ ଦୁଇ ଶବ୍ଦ ମଧ୍ୟରେ ଥାନ୍ତି ସେ ଦୁଇ ଶବ୍ଦକୁ ଭିନ୍ନ ଅର୍ଥ କରି ବୋଧ କରାନ୍ତି ଆଉ ପ୍ରତ୍ୟେକ ସ୍ଥଳରେ କ୍ରିୟା ଏକବଚନାନ୍ତ ହେବ । ଯଥା, ରାମ କିମ୍ବା ଗୋବିନ୍ଦ ଯାଉଅଛି । ରାମ ନତୁବା ଗୋବିନ୍ଦ ଯାଉଅଛି ।

ମାତ୍ର ଯୌଗିକ ବିଶେଷଣର ଅନ୍ୟ ଅଭିପ୍ରାୟ ଏହି କି ତଦ୍ୱାରା ଏକ ବାକ୍ୟର ନାନା ଅବୟବ ଏକତ୍ର ହୁଅନ୍ତି । କିମ୍ବା କେତେ ବାକ୍ୟ ସଂଯୋଗ ହୋଇ ମହାବାକ୍ୟ ପ୍ରତିପନ୍ନ ହୁଏ । ଉପର

ଲେଖିତ ସଂଯୋଜକ ଅଉ ବିଚ୍ଛେଦକ ବିଶେଷଣ ଶବ୍ଦ ଛଡା ଏହି ପ୍ରକାର ଅନ୍ୟ କେତେ ଶବ୍ଦ ମିଳେ । ଯଥା, ମାତ୍ର, କାରଣ, ସକାଶେ, ଅର୍ଥେ, ଅତଏବ, ଅପର, ତଥାପି, ଅଥଚ, ଯେବେ, ତେବେ, ଯଦ୍ୟପି, ବରଞ୍ଚ, ଇତ୍ୟାଦି । ଇହା ଦ୍ୱାରା କୌଣସି ବାକ୍ୟର ଭାଗେ ସେହି ବାକ୍ୟର ଅନ୍ୟ ଭାଗରେ ସଂଯୋଗ ହୁଏ କିମ୍ବା ନାନା ପରସ୍ପର ସମ୍ବନ୍ଧୀୟ ବାକ୍ୟ ଏକତ୍ର ହୋଇ ମହା-ବାକ୍ୟର ରଚନା ହୁଏ । ଯଥା, ଯଦ୍ୟପି ବାଲ୍ୟକାଳେ ବିଦ୍ୟା ଶିକ୍ଷା ନ କରିବ ତେବେ ମୂର୍ଖ ହେବ ଅଥଚ ଭଦ୍ର ଲୋକେ ଉପହାସ କରି-ବେ ଅତଏବ ଏତେବେଳେ ଯତ୍ନଶୀଳ ଏବଂ ବିଦ୍ୟାର୍ଥୀ ହୁଅ । ଏ ସ୍ଥଳରେ 'ଯଦ୍ୟପି ବାଲ୍ୟକାଳେ ବିଦ୍ୟା ଶିକ୍ଷା ନ କରିବ' 'ମୂର୍ଖ ହେବ' ଏ ଏକ ସମ୍ପୂର୍ଣ୍ଣ ବାକ୍ୟର ଦୁଇ ଅବୟବ 'ତେବେ' ଏହି ଯୌଗିକ ଶବ୍ଦ ଦ୍ୱାରା ଏକତ୍ର ହୁଅନ୍ତି । 'ଭଦ୍ର ଲୋକେ ଉପହାସ କରିବେ' ଏମଧ୍ୟ ସମ୍ପୂର୍ଣ୍ଣବାକ୍ୟ ଏବଂ 'ଅଥଚ' ଶବ୍ଦ ଦ୍ୱାରା ପୂର୍ବବର୍ତ୍ତି ବାକ୍ୟରେ ଯୁକ୍ତ ହୁଏ । 'ଏତେବେଳେ ଯତ୍ନଶୀଳ ଏବଂ ବିଦ୍ୟାର୍ଥୀ ହୁଅ' ଏହି ଶେଷବାକ୍ୟ 'ଅତଏବ' ଶବ୍ଦ ଦ୍ୱାରା ପୂର୍ବ ଦୁଇ ବାକ୍ୟ ସଙ୍ଗେ ଏକତ୍ର ହୁଏ । ଏତାଦୃଶ ନାନା ବାକ୍ୟର ମେଳନକୁ ମହା-ବାକ୍ୟ ବୋଲି ଯାଏ ।*

---

* ସଙ୍ଗେ, ସହିତ, ବିନା, ପ୍ରତି, ବ୍ୟତିରେକେ ଏହି ୨ ଶବ୍ଦ ମଧ୍ୟ ଯୌଗିକ ବିଶେଷଣରେ ଅନ୍ତର୍ଗତ ଜାଣିବ । ଏତନ୍ମଧ୍ୟରୁ କୌଣସି ଏକ ଶବ୍ଦ ଦୁଇ ସଂଜ୍ଞା ପୂର୍ବରେ ବା ପରେ ଉଚିତରୂପେ ସ୍ଥିତ ହେଲେ ସେ ଦୁଇ ସଂଜ୍ଞା ପରସ୍ପର ସମ୍ବନ୍ଧକୁ କହେ ।

## ଊନବିଂଶ ପ୍ରକରଣ ।

### ଅଥ ଉପସର୍ଗ ନିରୂପଣ ।

ଉପସର୍ଗ ବିଂଶତି ପ୍ରକାର । ଧାତୁ ଏବଂ ସମସ୍ୟମାନ ପଦ ପୂର୍ବରେ ସେମାନଙ୍କର ଯୋଗ ହୁଏ । ସେ ଉପସର୍ଗ ତ୍ରିବିଧ ହୁଏ । କୌଣସି ସ୍ଥଳରେ ଧାତ୍ୱର୍ଥ ବାଧକ ଅଉ କୌଣସିଠାରେ ଧାତ୍ୱର୍ଥକୁ ବିଶେଷ କରେ ପୁଣି କୌଣସି ସ୍ଥଳରେ ଧାତ୍ୱର୍ଥର ଅନୁଗତ ହୁଏ । ସେଥିର ଉଦାହରଣ ଏହି ।

| | | | | | |
|---|---|---|---|---|---|
| ପ୍ର | ପ୍ରଣାମ | ଉତ୍ | ଉତ୍ପତ୍ତି | ଦୁର୍ | ଦୁର୍ଗମ |
| ପରା | ପରାକ୍ରମ | ପରି | ପରିହାର | ବି | ବିହାର |
| ଅପ | ଅପମାନ | ପ୍ରତି | ପ୍ରତିପତ୍ତି | ଅଭି | ଅଭିମାନ |
| ନି | ନିଦାନ | ଅବ | ଅବଗତି | ଅତି | ଅତିକ୍ରମ |
| ଅଧି | ଅଧିଷ୍ଠାନ | ଅନୁ | ଅନୁରାଗ | ଅପି | ଅପିଧାନ |
| ସୁ | ସୁଲଭ | ଆ | ଆଦାନ | ଉପ | ଉପରୋଧ |
| ନିର୍ | ନିର୍ଲିପ୍ତ | | | | |

ପ୍ରାହ୍ନ, ଅନୁରୂପ, ଉପପଥ, ସମକ୍ଷ, ଦୁର୍ଦ୍ଦିନ, ସୁଜନ, ବିଧର୍ମ, ପ୍ରତିଦିନ, ଅପଯଶ, ଅଧିପତି, ଅତିରାଜା, ଆସମୁଦ୍ର ଇତ୍ୟାଦି ।

ଇତି ପଦଭାଗ ସମାପ୍ତ ।

---